# ଆହତ ଆଲୋକ

ନାଟ୍ୟକାର

ସରୋଜ ମିଶ୍ର

ପ୍ରକାଶକ



କଟକ-ଷ୍ଟୁଡେଣ୍ଟସ୍-ଷ୍ଟୋର

# ଆହତ ଆଲୋକ

ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ - ୭୫୩ ୦୦୨

ପ୍ରଥମ ସଂସ୍କରଣ : ବିଜୟା ଦଶମୀ, ୧୯୯୭
ଦ୍ୱିତୀୟ ସଂସ୍କରଣ : ୨୦୦୮

ମୁଦ୍ରାକର :
ଶତରୂପା ଡି.ଟି.ପି. ଓ ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ. ୪୦.୦୦ ମାତ୍ର

## AAHATA ALOKA

By Saroj Mishra

Publisher :
Sri N. P. Misra
Cuttack Students' Store
Balubazar, Cuttack – 753002

Principal Adviser :
Sri R. P. Misra

First Edition : 1997
Second Edition : 2008

Printers :
Satarupa D.T.P. & Sangeeta Printers, Cuttack

Price : Rs. 40.00 only

# ନିଜକଥା

ଅଧୁନା ପାଠକ ଓ ଦର୍ଶକ ଭଲ ନାଟକଟିଏ ପଢ଼ିବା ଆଉ ଦେଖିବା କଷ୍ଟସାଧ୍ୟ । ଅନ୍ୟ ପକ୍ଷରେ ମଞ୍ଚରେ ନାଟକ ନ ଦେଖି ପାଠକ ହୋଇ ନାଟକ ବହିଟିଏ ପଢ଼ିବସେ, ଯଦି ଭଲ ଲାଗେ ତେବେ ନାଟକର ଗତିଶୀଳ ପ୍ରଭାବ ମଧ୍ୟରେ ପାଠକଟି ଚରିତ୍ର ଭିତରେ ନିଜକୁ ମିଶେଇ ଦିଏ ସ୍ୱତଃ କେତେବେଳେ ନାଟକ ଭିତରେ ନିଜେ ଚରିତ୍ର ହୋଇ ଯାଇଛି, ତାହା ପାଠକ ଜାଣିପାରେନାହିଁ । କିନ୍ତୁ ଏହାର ବ୍ୟତିକ୍ରମ ଆସେ ଯେଉଁଠି ଗୁରୁତ୍ୱହୀନ କାହାଣୀ, ଉପଯୋଗହୀନ ଘଟଣା ଓ ଦ୍ୱନ୍ଦର ବିଚ୍ୟୁତି ଘଟିଥାଏ । ଫଳରେ ନାଟକ ଦର୍ଶକ ପାଖରୁ ଦୂରେଇ ଯାଏ । ମଞ୍ଚ ନାଟକ ଏବେ କମ୍ ଅଭିନୀତ ହେଉଛି । ମଞ୍ଚ ପ୍ରାୟ ଅବଲୁପ୍ତ । ଭଲ ନାଟକଟିଏ ଦେଖିବାକୁ ମିଳୁ ନଥିବାରୁ ନାଟକ ପାଇଁ ସମୟ ଉପଯୋଗ କରିବାକୁ ଦର୍ଶକ କାହିଁକି ଅବା ଚାହିଁବ ?

ତୁଳନାତ୍ମକ ଦୃଷ୍ଟିରେ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା ନାଟକ କମ୍ ସଂଖ୍ୟାରେ ପ୍ରକାଶ ପାଉଛି । ନାଟକ ରଚନା ଓ ନାଟକ ପରିବେଷଣରେ ପୂର୍ବର ଉଚ୍ଚ କଳାତ୍ମକ ମାନ ବହୁ ଭାବେ ହ୍ରାସ ପାଇଗଲାଣି ।

ଏ ସଂପର୍କରେ ଦୈନିକ 'ସମାଜ' ଓ 'ଧରିତ୍ରୀ'ରେ ମୋର କିଛି ପ୍ରବନ୍ଧ ପ୍ରକାଶିତ ହେଲାପରେ ନାଟ୍ୟକାର ନିର୍ଦ୍ଦେଶକ ଶିଳ୍ପୀ ମହଲରୁ ପ୍ରଶ୍ନ ଆସିଛି । ଏବେ ଯାହା ଲୋକେ ଖୋଜୁଛନ୍ତି ଆମେ କ'ଣ ସେଭଳି କିଛି ଲେଖି ପାରିବୁ ? ସେଭଳି କିଛି ପରିବେଷଣ କରିପାରିବୁ ?

ଏ ପ୍ରଶ୍ନ ଭାରି ଗୁରୁତ୍ୱର ପ୍ରଶ୍ନ । ସମ୍ଭବତଃ ଏ ପ୍ରଶ୍ନର ଓ ତା'ର ସୁଚିନ୍ତିତ ଉତ୍ତର ଭିତରେ ନିହିତ ରହିଛି ଓଡ଼ିଆ ନାଟ୍ୟକର୍ମର ଭବିଷ୍ୟତ । ପ୍ରକୃତରେ ଏ ପ୍ରଶ୍ନର ଯଥାଯଥ ଉତ୍ତର ମୋ ପାଖରେ ନାହିଁ । ଅଛି, ସେଇ ପ୍ରଶ୍ନକର୍ତ୍ତାମାନଙ୍କ ପାଖରେ

ବର୍ତ୍ତମାନର ଓ ଭବିଷ୍ୟତର । କାରଣ ସେହିମାନେ ହିଁ ଓଡ଼ିଆ ନାଟ୍ୟକର୍ମର ସୂତ୍ରଧର, କର୍ମଧାର ଓ ଅଗ୍ରଦୂତ ।

ଓଡ଼ିଆ ନାଟ୍ୟକାର କେତେବେଳେ ବିଦେଶୀ ନାଟକର ପ୍ରଭାବରେ ଓ କେତେବେଳେ ପ୍ରତିବେଶୀ ନାଟକର ମେରି-ଗୋ-ରାଉଣ୍ଡରେ ଘୂରିବୁଲୁଥିବାର ଦେଖାଯାଏ । ହଠାତ୍ ଲୋକପ୍ରିୟ ହେବାର ସ୍ୱପ୍ନରେ ନାଟକର ମୌଳିକ ହସ୍ତରେଖାକୁ ଉଠାଇ ଭରତ ମୁନିଙ୍କ ପରମ୍ପରା ଭଙ୍ଗ କଲେ ତାହା ନୁହେଁ । ନିଜ ତୂଳିରେ ନାଟ୍ୟକାର ମଣିଷ ଆଙ୍କୁ ଆଙ୍କୁ ମାଙ୍କଡ଼ ହିଁ ଗଢ଼ିବା ସାର ହେଲା । ଏକ ନିର୍ଦ୍ଦିଷ୍ଟ ଦୃଶ୍ୟରେ ମଣିଷକୁ ଦେଖିବାକୁ ଅପେକ୍ଷା କରିଥିବା ଦର୍ଶକଟିର ଆଗରେ ମାଙ୍କଡ଼ଟିଏ ଡେଇଁବାର ଦୃଶ୍ୟ ଦେଖାଗଲା । ନାଟ୍ୟକାର ଏହାକୁ ପ୍ରତୀକ ଧର୍ମୀ ଓ ଉଭଟ କହି ନିଜେ ତୁଷ୍ଟ ହେଲେ ଏବଂ କେତେକ ନାଟ୍ୟକାର ଗଣମାଧମ ଓ ବେତାର ସିଡି ଦେଇ ହଠାତ୍ ନାଟକର ଜହ୍ନକୁ ହାତ ପାପୁଲିରେ ଲୁଚେଇ ଦେବାର ଅପଚେଷ୍ଟା କରିଚାଲିଲେ - ଫଳରେ ମଞ୍ଚ ନାଟକର ଦୁର୍ଗତି ଘନେଇ ଆସିଲା - ସମାଜର ଅସରନ୍ତି ଅବୁଝା ଚରିତ୍ର, ପ୍ରତି ମୁହୂର୍ତ୍ତର ଘଟଣା, ଇତିହାସ, ଜୀବନ ନିର୍ଯ୍ୟାସ, ନୃତ୍ୟ ସଙ୍ଗୀତର ରୁଣୁଝୁଣୁ ଘୁଙ୍ଗୁରର ଶବ୍ଦ କ୍ରମେ ନାଟ୍ୟକାରର କାନରେ ଶୁଭିଲା ନାହିଁ । ଅନ୍ତଃସାରଶୂନ୍ୟ ନାଟକ ସୃଷ୍ଟି ହେଇ ଦର୍ଶକର ରୁଚିକୁ ଏକ ଶୂନ୍ୟତାରେ ଡାଙ୍କି ପକାଇଲା ।

ଏଣୁ ନାଟ୍ୟକାରକୁ ସମାଜ ସହ ସାମିଲ ହେବାକୁ ହବ । ଚିହ୍ନିବାକୁ ହବ ନିଜକୁ, ସମାଜକୁ, ବ୍ୟକ୍ତିକୁ, ତା'ର ହସ ଲୁହକୁ, ବ୍ୟଥା ବେଦନାକୁ, ଯାହା ସତ୍, ଉଚିତ୍ ନାଟ୍ୟକାର ନିର୍ଭିକ ଭାବରେ ନାଟକର ଚରିତ୍ରରେ ବ୍ୟକ୍ତ କରିଦେବାରେ ଯଦି ଆଶଙ୍କା ରୁହେ ତେବେ ସେ ନାଟକ ଗଣର ନ ହୋଇ ଜଣର ହେଇଯିବ । ପ୍ରଭାବିତ କରିବା ଦୂରର କଥା ମନେ ବା କାହିଁକି ରହିବ ।

ସାଧାରଣଭାବେ କହିଲେ ମୋର ବିଶ୍ୱାସ ଯେ ନିବିଷ୍ଟ ଚିତ୍ତ, କ୍ଲାନ୍ତିହୀନ ସାଧନା ଏବଂ ଏକାଗ୍ର ନିଷ୍ଠା ସର୍ବୋପରି ନାଟକର କାହାଣୀ ଚରିତ୍ର ବା ଅନ୍ୟ ବିଭାବ ମଧ୍ୟରେ ନିଜକୁ ଆମୂଳ କରିବାର ମାନସିକତା ଓ ଦକ୍ଷତା ବଳରେ ହତାଶାପୀଡ଼ିତ ଦର୍ଶକମାନଙ୍କୁ

ପୁନର୍ବାର ମଞ୍ଚ ପ୍ରତି ଆକୃଷ୍ଟ କରି ଆଣିବ, ନାଟ୍ୟକାର ଓ ନାଟକକୁ ସ୍ମରଣୀୟ କରିପାରିବ ।

'ଆହତ ଆଲୋକ' ନାଟକଟି ମଞ୍ଚ ଓ ବେତାରରେ ମଞ୍ଚସ୍ଥ ଏବଂ ପ୍ରସାରିତ କାହାଣୀ ନିର୍ବାଚନ ପୂର୍ବରୁ ଏହି ବିଷୟବସ୍ତୁ ଶୀର୍ଷକକୁ ନେଇ ମନରେ ଖୁବ୍ ବେଶୀ ଆନ୍ଦୋଳନ ଆସିଥିଲା । ଦେଶ ସ୍ୱାଧୀନ ହେବା ପରେ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଅବସ୍ଥା ଯାହା, ତାହା ଏ ଦେଶର ପ୍ରତିଟି ସଚେତନଶୀଳ ନାଗରିକ ଅଣ୍ଟେ ବହୁତେ ଉପଲବ୍ଧ କରୁଥିବେ । ଦେଶ ସ୍ୱାଧୀନ ହୋଇଥିଲେ ବି ଆମେ କ'ଣ ନିର୍ଭୟରେ ଦୃଢ଼ କଣ୍ଠରେ କହିପାରିବା ଆମେ ସ୍ୱାଧୀନ ? ପରାଧିନତାର ବେଡି ଖୋଲି ଦେଇ ଯେଉଁମାନେ ଆମ ପାଇଁ ଆଲୋକର ଶିଖା ହୋଇ ନିଜେ ଜଳି ଆମକୁ ପଥ ଦେଖେଇଲେ, ସେମାନଙ୍କୁ କେଉଁଭଳି ଭାବେ ଆମେ ସମ୍ମାନ ଦେଇଛେ ? ପୂଜା କରୁଛେ ? ସଂପ୍ରତି ଅର୍ଥ, ବାହୁବଳ, ଅନ୍ୟାୟ, ଅନୀତି ଆମ ରାଜନୀତିକୁ କଳୁଷିତ କରିଚାଲିଛି । ଯେଉଁମାନଙ୍କ ମହନୀୟ ଜୀବନ ବଦଳରେ, କର୍ମ ବଦଳରେ ବହୁ କଷ୍ଟଲବ୍ଧ ସ୍ୱାଧିନତା ଆମେ ପାଇଛେ, ସେ ସ୍ୱାଧିନତା ଆମ ପାଖରୁ ହାତଛଡ଼ା ହୋଇଯିବ ନାହିଁ ତ ? ପାଣୁମାଷ୍ଟ୍ରଙ୍କର ବହୁ ଆଦରଣୀୟ ଓ ଅନୁଗତ ଛାତ୍ର ବିପ୍ଳବ, ସୂର୍ଯ୍ୟ ଓ ସତ୍ୟ ଚଳନ୍ତି ଯୁବ ପିଢ଼ିର ଜଣେ ଜଣେ ପ୍ରତିନିଧି । ସ୍ୱାଧିନତାକୁ ଅକ୍ଷୁର୍ଣ୍ଣ ରଖିବାକୁ କ'ଣ ସେମାନେ କରିଛନ୍ତି । ବ୍ୟକ୍ତି, ଦେଶ ଓ ଜାତି ପାଇଁ କର୍ତ୍ତବ୍ୟ କ'ଣ ସ୍ୱାର୍ଥପରତା ଭିତରେ ସୀମାବଦ୍ଧ ? ଅବଳା ଦୁର୍ବଳା ମିନୁ ଦେଶ ପାଇଁ ସ୍ୱାଧିନତାର ସୁରକ୍ଷା ପାଇଁ ଶକ୍ତିମୟୀ ହୋଇପାରିବ ତ ? ସ୍ୱାର୍ଥ ସର୍ବସ୍ୱ ଦୁନିଆରେ ମାନବିକତା ଛିନ୍ନମୂଳ ନୁହେଁ ବୋଲି ଜାହିର କରିପାରିବ ତ ?

ଏହିପରି ଅନେକ ପ୍ରଶ୍ନବାଚୀକୁ ସମାଧାନ କରିବାକୁ ଯାଇ, ଏ ନାଟକ ପ୍ରଥମେ ଲେଖା ଆରମ୍ଭ ହେଇଥିଲା ୧୯୯୪ରେ । ୧୯୯୫ରେ ଏହି ନାଟକଟିର ପରିବର୍ଦ୍ଧିତ ପରିବର୍ତ୍ତିତ କଳେବରକୁ ନେଇ ଆକାଶବାଣୀରେ ପ୍ରସାରିତ ହେଲା ଏବଂ ୧୯୯୭ରେ ରବୀନ୍ଦ୍ର ମଣ୍ଡପ, ଭୁବନେଶ୍ୱର ଏହାର ମଞ୍ଚ ଉପଯୋଗୀ ସଂସ୍କରିତ ରୂପ ଅଭିନୀତ ହୋଇ ସର୍ବଶ୍ରେଷ୍ଠ ପାଣ୍ଡୁଲିପି ପୁରସ୍କାର ପାଇଲା । ଦୂରଦର୍ଶନରେ ଏହି ନାଟକ "ଭିନ୍ନ

ଏକ ବର୍ଣ୍ଣବୋଧ'' ନାମରେ ପରିବେଷିତ ହୋଇ ଓଡ଼ିଶାର ଅଗଣିତ ଦର୍ଶକଙ୍କ ଆଦର ଲାଭ କରିଛି । ତେଣୁ ୧୯୯୪ର ଲେଖା ଓ ଆଜିର ମୁଦ୍ରିତ ଲେଖା ଭିତରେ ନବେ ଭାଗ ଫରକ ରହିଛି । ଏଠାରେ ଉଲ୍ଲେଖ କରିବାକୁ ବାଧ୍ୟ ହେଉଛି ଯେ ନାଟକଟି ଅଭିନୀତ ହେବା ପୂର୍ବରୁ ନିର୍ଦ୍ଦେଶକ ସଂଳାପନ ଚୟନ ଭିତରେ ଅଭିନୟ କୌଶଳ ସଂଗୀତ ପ୍ରତି ଅଧିକ ଦୃଷ୍ଟି ଦେବାକୁ ଅନୁରୋଧ ଏବଂ ଏହି ନାଟକର ସମୟସୀମା ଏକ ଘଣ୍ଟା ପଇଁଚାଳିଶ ମିନିଟ୍ ହେବ ।

ଏହାର ଦ୍ୱିତୀୟ ସଂସ୍କରଣ ଅବସରରେ ମୁଁ ମୋର ବଂଧୁ ସୁସାହିତ୍ୟିକ ପ୍ରକାଶକ ଶ୍ରୀଯୁକ୍ତ ନୃସିଂହ ପ୍ରସାଦ ମିଶ୍ରଙ୍କ ଗଭୀର ନିଷ୍ଠା ଓ ଉଦ୍ୟମକୁ ପ୍ରଶଂସା ନ କରି ରହିପାରୁନି ।

ନାଟ୍ୟକାର

# ଆଭାସ ଦୃଶ୍ୟ

(ମଞ୍ଚର ସାମ୍ନା ଭାଗରେ – ଆଲୋକର ଆବର୍ତ୍ତ ମଧ୍ୟରେ ସ୍ୱାଧୀନତା ସଂଗ୍ରାମୀ ପାଣ୍ଡୁ ମାଷ୍ଟ୍ରେ ଅବିଶ୍ରାନ୍ତ ଭାବରେ ଦୌଡ଼ି ଚାଲିଛନ୍ତି କ୍ଲାନ୍ତ ହେବା ପର୍ଯ୍ୟନ୍ତ – ଦେହରେ ତାଙ୍କର ଯେମିତି ଅସଂଘ୍ୟ ଯନ୍ତ୍ରଣା)

ପାଣ୍ଡୁମାଷ୍ଟ୍ରେ	ଦୌଡ଼ି ଦୌଡ଼ି ମୁଁ ଅଣନିଶ୍ୱାସୀ ହୋଇଗଲିଣି ।
କଣ କରିବି ? କିଛି ବୁଝି ବି ପାରୁନି ।
କାହିଁ ଖୋଜୁଥିବା ମଣିଷଟିଏ ତ ପାଉନି ।
ଖୋଜି ଖୋଜି ମୁଁ ଆଜି ନୟାନ୍ତ ହୋଇଗଲିଣି –
ସଂଗ୍ରାମ ସରିଯାଇଛି – ସଂଗ୍ରାମୀମାନେ ମଧ୍ୟ ଧିରେ ଧିରେ ଅସ୍ତ ହୋଇଗଲେଣି –
ହେଲେ ସେମାନଙ୍କୁ ଆମେ ମନେ ପକାଉଛେ, ଜୟନ୍ତୀ ଉତ୍ସବରେ ।
ଶ୍ରାଦ୍ଧ ବାର୍ଷିକୀରେ, ଭାଷଣରେ, ଫଟୋ ଜରିଆରେ, ଖବର କାଗଜରେ

କିନ୍ତୁ .......... (ଦୀର୍ଘଶ୍ୱାସ)

ଯେଉଁମାନେ,
ଆଲୋକ ବର୍ତ୍ତୀକା ଧରି ଅଂଧକାର ଚିରି
ଆମକୁ ଆଲୋକିତ କଲେ,–
ସେ ଆଲୋକ ଆସ୍ତେ ଆସ୍ତେ ଲିଭି ଲିଭି ଆସିଲାଣି
ସେ ଆଲୋକ କ'ଣ ସବୁଦିନ ପାଇଁ ନିର୍ବାପିତ ହେଇଯିବ ?

ନା.............. ।

ସେ କେବେ ନିର୍ବାପିତ ହୋଇପାରେନା,

ନା....... ଲିଭି ପାରେନା ସେ ଆଲୋକ ବର୍ତ୍ତୀକା ଧରି କେହି ନା କେହି ଆଗେଇ ଯିବା ଦରକାର....... ।

ସେହି କେହି ନା କେହି ଭିତରେ ମୁଁ କାହିଁକି ନୁହଁ ? କାହିଁକି ନୁହେଁ ?

ଅନ୍ଧାର

# ପ୍ରଥମ ଆଲୋକ

*(ସ୍ୱାଧୀନତା ସଂଗ୍ରାମୀ ପାଣ୍ଡୁ ମାଷ୍ଟ୍ରେଙ୍କ ଘର – ଜଣେ ମଧ୍ୟବିତ୍ତ ପରିବାରର ସାଜସଜ୍ଜା – ପାଣ୍ଡୁ ମାଷ୍ଟ୍ରେଙ୍କ ପୁତ୍ରରା ସତ୍ୟରଞ୍ଜନ ବହି ର୍‌ୟାକ୍‌ରୁ ଗୋଟେ ପତ୍ରିକା ଟାଣି ଆଣି ପଢ଼ି ବସିଛି, ହଠାତ୍ ତା'ର ବନ୍ଧୁ ବିପ୍ଳବର ପ୍ରବେଶ)*

ସତ୍ୟ — ଆରେ ବିପ୍ଳବ ! What a surprise. (ହସ)

ବିପ୍ଳବ — Surprise. (ଉଭୟେ ହସିଛନ୍ତି)

ସତ୍ୟ — ହଁ ଚାରିବର୍ଷ ପରେ ଯେତେବେଳେ without intimationରେ ଆମ ଘରକୁ ଆସୁଛୁ – surprise ନୁହେଁ ତ ଆଉ କ'ଣ ?

ବିପ୍ଳବ — ଆଉ ତୋ'ର ହାଲ୍ ଚାଲ କ'ଣ ସବୁ ? ତୋ ଚେହେରା ତ କିଛି ବଦଳିନି ? ସାର୍ କାହାନ୍ତି ? ମିନୁର ଖବର କ'ଣ ?

ସତ୍ୟ — ଏକାବେଳକେ ଏତେଗୁଡ଼ାଏ ପ୍ରଶ୍ନ । ଆରେ ଆଗ ବସ୍– ପରେ କଥା ହେବା ।

ବିପ୍ଳବ — ମିନୁ ଏତେଦିନ ପରେ ମତେ ଦେଖିବେ .... କହିଲୁ, ସିଏ ମତେ ଚିହ୍ନି ପାରିବେ ତ ?

ସତ୍ୟ — ନା, ଚିହ୍ନି ପାରିବନି – ଏ, ମିନୁ ! ମିନୁ... ମିନୁ...

ମିନୁ — (ଭିତରୁ) ହଁ ଯାଉଚି ... ଏମିତି ଚିଲଉଚୁ କାହିଁକି ? (ପ୍ରବେଶ) ଛୁଞ୍ଚିଟାରେ ହାତଟା ପରା ଫୁଟିଗଲା ... ଦେଖିଲୁ କି ରକ୍ତ ...

ସତ୍ୟ — ହଁ, ଫୁଟିବନି କାହିଁକି ... ତୁ ତ ସବୁବେଳେ ଅନ୍ୟମନସ୍କ ହଉଚୁ, ଚିହ୍ନିଲୁ, ଏ ବାବୁ କିଏ ?

ମିନୁ : ଆରେ ......... ନମସ୍କାର !

ବିପ୍ଳବ   ନମସ୍କାର ।

ମିନୁ   ବିପ୍ଳବବାବୁ ଆପଣ ଯେ ହଠାତ୍ ?

ବିପ୍ଳବ   :   ଯାହାହେଉ, ମିନୁ ତ ଚିହ୍ନି ପାରିଲେ – ଆଉ ତୁ କହୁଛୁ ଚିହ୍ନି ପାରିବେନି । ସତ୍ୟକୁ Surprise ଦେବି ବୋଲି ଆଗରୁ ଚିଠି ଦେଇନି ...

ସତ୍ୟ   ବୁଝିଲୁ ବିପ୍ଳବ । ରୁମାଲ ସିଲେଇବେଳେ ସେ ସିନା ଟିକିଏ ଅନ୍ୟମନସ୍କ ହେଉଛି...

ମିନୁ   ଯାଃ ... ସତ୍ୟଭାଇ ! (ଲାଜେଇ ଯାଇଛି)

ସତ୍ୟ   ନହେଲେ ମିନୁ ଆମର Mathରେ Universityରେ ଫାଷ୍ଟକ୍ଲାସ ଫାଷ୍ଟ....

ବିପ୍ଳବ   Congratulation, ଆଜି Dinnerଟା ତା'ହେଲେ ବେଶ୍ ଜମିବ –

ସତ୍ୟ   ହଁ, ତାକୁ ତୁ କହ, ଯେମିତି ରୋଷେଇ କଲାବେଳେ ଅନ୍ୟମନସ୍କ ନ ହୁଏ ।

ମିନୁ   :   ତୁ ସତ୍ୟଭାଇ, ଭାରି ଇଏ – ଆଉ କ'ଣ କିଛି ନ ଥିଲା ତୋର – ମୁଁ କାହିଁକି ଅନ୍ୟମନସ୍କ ହେବି – ଆରେ ବାବା ଗପୁଛି କ'ଣ ? ଆଗ ଯାଇ ତୁମକୁ ଦି କପ୍ ଚା ଆଣି ଦେଇଯାଏ । ତମେ ଦୁହେଁ ଗପୁଥା । ହେ, ସତ୍ୟଭାଇ ! ଦେଖିଲୁ, ବିପ୍ଳବ ବାବୁ ଦିଲ୍ଲୀ ଜଳବାୟୁରେ ବେଶ୍ ପରିବର୍ତ୍ତନ ହେଇଯାଇଛନ୍ତି । ଚେହେରା ଖୁବ୍ ବଦଳି ଯାଇଛି ତାଙ୍କର ।

ସତ୍ୟ   (ହସି ହସି) ହଁ ।

ବିପ୍ଳବ   (ହସି) ଆରେ ବାପରେ ବାପ । ଦୁହେଁ ମିଶି ଦେଖୁଚି ମୋ ଚେହେରାକୁ ଦୃଷ୍ଟି ପକେଇ ଦେଲଣି । (ସମସ୍ତେ ହସିଉଠିଛନ୍ତି)

ଅନ୍ଧାର

# ଦ୍ୱିତୀୟ ଆଲୋକ

*(ଚୌଧୁରୀ ମଣି ମିଶ୍ରଙ୍କ ଅତ୍ୟାଧୁନିକ ସୁସଜ୍ଜିତ ଘର – ଦେଶର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ଫଟୋଚିତ୍ର କାନ୍ଥରେ ଟଙ୍ଗା ଯାଇଥିବ – ଚୌଧୁରୀ ଖୁସି ଥାଆନ୍ତି – ପାଖରେ ଚାମଚା ଦୁଃଶା)*

ଚୌଧୁରୀ : (ହସି) ଏଥର ମନ୍ତ୍ରୀପଦ ନିଶ୍ଚୟ ।
ତିନିଥର ଯାକ ମନ୍ତ୍ରୀପଦ ହଉହଉ ଖସି ଯାଇଚି ସତ, ଏଥର କିନ୍ତୁ ନୁହେଁ । ତିନି ତିନି ବାର ଯେମିତି ଆସିଲି, ଏ ବାର ମଧ ସେମିତି ଆସିବି, ଆଉ ମନ୍ତ୍ରୀ ବି ହେବି, ହେବି, ହେବି ।

ଦୁଃଶା ଆଜ୍ଞା !
ଆପଣ ହେବେନି ତ ଆଉ ହବ କିଏ –

ଚୌଧୁରୀ : ଆଚ୍ଛା ତୁ କହିଲୁ ଦୁଃଶା !
ଏ ଅଞ୍ଚଳ ପାଇଁ ମୁଁ କ'ଣ ନ' କରିଛି ?

ଦୁଃଶା ଆଜ୍ଞା !
ଏକଥା କିଏ ନ ଜାଣେ, ଆପଣ କ'ଣ ନ କରିଛନ୍ତି ।
ରାସ୍ତାଘାଟ, କୂଅ, ପୋଖରୀ, ଥାନା, ପାଇଖାନା, ଡାକ୍ତରଖାନା, କୋଉଟା ନ ହେଇଚି ଯେ ।

ଚୌଧୁରୀ : କେମିତି ହେଇ ପାରିଲା ? ସେଇଟା ବୁଝିବାକୁ ହବ ।
ଆରେ ଦୁଃଶା ! ଦଳର ବରିଷ୍ଠ କର୍ମକର୍ତ୍ତା ଭାବରେ,
ମୋ କଥା କିଏ କୋଉଠି କେବେ କାଟିନି, କି କାଟିବନି ।

ଦୁଃଶା ହେଲେ ଆଜ୍ଞା, ବେଳେବେଳେ ବୁଝିବାରେ ଟିକିଏ ଅସୁବିଧା ହେଇଯାଏ ।

ଚୌଧୁରୀ : ବୁଝିବେ, ଠିକ୍ ବୁଝିବେ । ଅଲବତ୍ ବୁଝିବେ ।
ବାରମ୍ବାର ଏମାନଙ୍କୁ ପରଖିଚି । ଏମାନେ ହଉଛନ୍ତି ମେଣ୍ଢାପଲ । ଗୋଟିଏ ମେଣ୍ଢାକୁ ବଶୀଭୂତ କରି ନିଜ ଆୟତ୍ତରେ ରଖିପାରିଲେ, ଅନ୍ୟ ମେଣ୍ଢାମାନେ ଡେଇଁ ପଡ଼ିବାରେ କିଛି ଅସୁବିଧା ହବନି । (ହସ) ।

ଦୁଃଶା ଆଜ୍ଞା !
ଆଜି ଏ ମେଣ୍ଢା ପଲ ଭିତରୁ ବି କେହି କେହି ଦଳପତି ହବାକୁ ମୁଣ୍ଡ ଟେକୁଛନ୍ତି ।

ଚୌଧୁରୀ : ଆରେ ସେଇ କଥାତ କହୁଚି । ସେଇ ମୁଣ୍ଡ ଟେକୁଥିବା ମେଣ୍ଢାଟିକୁ ଯଦି ଆମେ ଯେନତେନ ପ୍ରକାରେ କରାୟତ୍ତ କରିଦବା, ତା'ହେଲେ ?

ଦୁଃଶା ବୁଝିଗଲି, ବୁଝିଗଲି, ଆଜ୍ଞା ! ଆପଣଙ୍କ ବୁଦ୍ଧିକୁ ତାରିଫ ନକରି ରହିପାରୁନି ।

ଚୌଧୁରୀ : କଳେ, ବଳେ ନ ହେଲେ କୌଶଳେ.......
ବୁଝିଲୁ ଦୁଃଶା ! ଇଏ ହେଲା ରାଜନୀତିର ତିନିଟା ପାହାଚ ।
ଭାରି ଖସଡ଼ା ସେ ପାହାଚ । ଯିଏ ଚଢ଼ି ଜାଣିଛି,
ସିଏ ରାଜନୀତି କରି ଜାଣିଛି (ହସ)

ଦୁଃଶା ତଥାପି ଯଦି ବାଉଳାରେ କଦବାକୋଚିତ୍ ଗୋଡ଼ଟା ଖସିଗଲା । ତେବେ.........

ଚୌଧୁରୀ : ଆରେ କୋଉ ପାହାଚରୁ ଗୋଡ଼ଟା ଖସିବ ଆଗ କହ ।

ଦୁଃଶା କୋଉ ପାହାଚ ମାନେ, ଆଜ୍ଞା ! ଯୋଉ ପାହାଚ ହଉ ।

ଚୌଧୁରୀ : (ହସି) Idiot ମୂର୍ଖ କୋଉଠିକାର ।
ଖସିଯାଇ ପଡ଼ିଗଲେ ସିନା ଆଣ୍ଠୁ ଗଣ୍ଠି ଖଣ୍ଡିଆ ଖାବରା ହେଇ ଜଖମ ହେଇଯିବ, କିନ୍ତୁ ମରିବ ନାହିଁ । ତା'ପରେ – ଦେଖିବୁ, କିଛି ଦିନ ପରେ ମକୁ ଝାଡ଼ିଝୁଡ଼ି ହେଇ ପୁଣି ଚଢ଼େଇ ଉଠିବ । ଆରେ ନୀତି ଛାଡ଼ି ଯିଏ ରାଜ୍ କରୁଛି, ସିଏ କ'ଣ ରାଜନୀତି ଛାଡ଼ିଛି ?

ଦୁଃଶା ଆଜ୍ଞା ! ମାହାଳିଆରେ କ'ଣ ଆପଣ ମୋର ଗୁରୁ !
କଥାରେ ପରା ଅଛି – ସ୍ମରଣ କରି ଗୁରୁ ବଚନ, କାର୍ଯ୍ୟ କରିବ ସମାପନ ।
(ହସ)

ଚୌଧୁରୀ : (ହସି ହସି) ବାଇଆଟା ।

ଅନ୍ଧାର

# ତୃତୀୟ ଆଲୋକ

*(ପାଣ୍ଡୁମାଷ୍ଟ୍ରଙ୍କ ପୂର୍ବ ବର୍ଣ୍ଣିତ ଘର, ସତ୍ୟ ଘରର ବହିଥାକକୁ ସଜାଡୁଛି – ପାଖରେ ବନ୍ଧୁ ବିପ୍ଳବ ବସି ପୁରୁଣା ଖବର କାଗଜ ଦେଖୁଛି)*

ବିପ୍ଳବ — ସାର୍ କୁଆଡ଼େ ଯାଇଛନ୍ତି ?

ସତ୍ୟ — କଲ୍ୟାଣ ନଗର ହାଇସ୍କୁଲର ଆଜି ସୁବର୍ଣ୍ଣ ଜୟନ୍ତୀ ।
ଦାଦା ରାଜି ହେଉ ନଥିଲେ, ହେଲେ ଏମିତି ପ୍ରେସର ପଡ଼ିଲା ଯେ, ଯିବାକୁ ବାଧ ହେଲେ । ଏଇ ନଅଟା ଭିତରେ ଫେରି ଆସିବେ ।

ବିପ୍ଳବ — ତୁ ଏବେ କ'ଣ କରୁଛୁ ?

ସତ୍ୟ — ବିଜିନେସ୍ କରୁଛି, ତୋ ପରି ତ P.hd. କି D.lit କରିପାରିବିନି, ଏମିତି ଚାଲିଛି । ଆଉ ତୋ' କଥା ?

ବିପ୍ଳବ — P.hd. ସରିଗଲା । ଷ୍ଟେଟ୍ସ୍ ଯିବାକୁ ଗାଇଡ୍ କହୁଥିଲେ, ମୁଁ ମନା କଲି । ପରେ ସୁବିଧା ଦେଖିଯିବି ।

ସତ୍ୟ — Chance ଟା କାହିଁକି ଛାଡ଼ିଲୁ ?

ବିପ୍ଳବ — ଆରେ, ପାଠପାଠ ହେଇତ ବାଇଶ ବର୍ଷ ଗଲାଣି ।
କିନ୍ତୁ ମତେ ଲାଗୁଛି, ଯୋଉଠି ଆମର ଜନ୍ମ, ଶୈଶବ, ଯୋଉ ମାଟି ପାଣି ପବନରେ ଆଜି ଆମେ ଏତେ ବଡ଼ ହେଇଚେ,
ତା'ର ଉନ୍ନତି ଲାଗି ଆମ ପାଠ ଯଦି କିଛି କାମରେ ନ ଆସିଲା,
ତେବେ ଏ ପାଠର ମୂଲ୍ୟ କ'ଣ ? (ଦୀର୍ଘ ଶ୍ୱାସ)
ଆଜି ସାର୍‌ଙ୍କ ପାଖକୁ ଆସିଛି । ତାଙ୍କରି ଆଦର୍ଶକୁ ପାଥେୟ କରି, ତାଙ୍କ ପାଦଧୂଳି ନେଲା ପରେ ଯାଇ ଯାହା କିଛି କରିବି ।

ସତ୍ୟ		ସମସ୍ତେ ତ ଦାଦାଙ୍କୁ ସେଇଆ କହୁଛନ୍ତି ।
ସ୍ୱାଧିନତା ସଂଗ୍ରାମରେ ବ୍ରିଟିଶର କୋରଡ଼ା ମାଡ଼,
ହାଜତର ହାତକଡ଼ି ଚିହ୍ନ, ଦାଦାଙ୍କ ଦେହରେ ଆଜିବି ସୁସ୍ପଷ୍ଟ ।
କିନ୍ତୁ ସେ ରାଜନୀତିରେ ନ ରହି, ମଣିଷ ଗଢ଼ିବା ଉଦ୍ଦେଶ୍ୟରେ, ନିଜ
ଉଦ୍ୟମରେ ସ୍କୁଲ ଗଢ଼ିଲେ । (ଦୀର୍ଘ ଶ୍ୱାସ)
ଆଉ ତାଙ୍କର ଅନେକ ଛାତ୍ର ସମାଜରେ ଆଜି ସୁପ୍ରତିଷ୍ଠିତ ।
କିନ୍ତୁ ଦାଦା ଆମର, ଜଣେ ସାମାନ୍ୟ ଅବସରପ୍ରାପ୍ତ ଶିକ୍ଷକ ।
ସେଇଥିରେ ତାଙ୍କର ଆନନ୍ଦ ।

ବିପ୍ଳବ		ହେଲା, ତୋରି କଥା ହେଲା ।
ସାର୍‌, କିଛି ହୋଇପାରି ନାହାନ୍ତି, କି' କିଛି ନିଜ ପାଇଁ କରିପାରି ନାହାନ୍ତି ।
କିନ୍ତୁ
ଦେଶକୁ ସ୍ୱାଧୀନ କରିବା ପାଇଁ ତାଙ୍କର ଯୋଉ ତ୍ୟାଗ
ତାଙ୍କର ସାଧନା, ତୁ ଭାବୁଚୁ ସତ୍ୟ ! ସବୁ କ'ଣ ବ୍ୟର୍ଥ ହେଇଯାଇଚି ?

ସତ୍ୟ		(ତାଚ୍ଛଲ୍ୟ) ନା – ବ୍ୟର୍ଥ କାହିଁକି ହବ ।
ତାଙ୍କର ଅନେକ ସ୍ୱାଧୀନତା ସଂଗ୍ରାମୀ ସାଥୀମାନଙ୍କ ଭିତରୁ
ଆଜି କିଏ ମନ୍ତ୍ରୀ ତ, ପୁଣି କିଏ ମୁଖ୍ୟମନ୍ତ୍ରୀ ?
ଭାବି ଦେଖିଲୁ, ବିପ୍ଳବ !
ଏତେବଡ଼ ଦୁନିଆରେ ଦାଦାଙ୍କ ପରିଚୟ କ'ଣ ? ତାଙ୍କ ପରିଚୟ ଆଜି
ପ୍ରାୟ ଏଇ ସ୍ୱାର୍ଥାନ୍ୱେଷୀ ଦୁନିଆରେ ହଜିଯାଇଛି ।

ବିପ୍ଳବ		ଅଛି...
ଆଜି ବି ଏ ଦେଶରେ ଯୋଉ କେତେଜଣ ସଚ୍ଚା ଦେଶପ୍ରେମୀ ବଞ୍ଚି ରହିଛନ୍ତି,
ସାରଙ୍କ ନାଁ'ରେ ସେମାନେ ଶପଥ ନିଅନ୍ତି କେବଳ ସେଇ ଟିକକ ଆଦର୍ଶ
ପାଇଁ !

ସତ୍ୟ		(ମନକୁ ନ ପାଇଲା ପରି ହସ) ହୁଁ.... ଆଦର୍ଶ !
ମୁଁ ଏଥିରେ ବିଶ୍ୱାସ କରେନା ।
ଯୋଉ ଛାତ୍ରମାନେ ଦାଦାଙ୍କ ଆଦର୍ଶରେ ଆଜି ଅନୁପ୍ରାଣିତ ବୋଲି କହୁଛୁ ।

ସେମାନେ ସମସ୍ତେ ଆଜି କ୍ଷମତାସୀନ,
କ'ଣ ସେମାନେ କରୁଛନ୍ତି ? ଦେଶପାଇଁ, ସମାଜ ପାଇଁ, ଜାତି ପାଇଁ,
Nothing - Nothing - Simply Nothing.
ଦେଶ ପାଇଁ କାନ୍ଦୁଛନ୍ତି ।
କିନ୍ତୁ,
ନିଜ ସ୍ୱାର୍ଥ ପାଇଁ – ଯାହା ମିଳୁଛି, ବାନ୍ଧୁଛନ୍ତି ।
ସତରେ ବିପ୍ଳବ, ଦାଦାଙ୍କ ପରିଚୟ କଥା ଭାବିଲେ,
ମୁଁ ଅନେକ ସମୟରେ ନିଜକୁ ବୁଝେଇ ପାରେନା ।

ବିପ୍ଳବ — କିନ୍ତୁ ସାର୍‌ଙ୍କ ପରିଚୟ
ଆଜି କାଲିକାର ନେତୃସ୍ଥାନୀୟ ବ୍ୟକ୍ତିଙ୍କଠାରୁ ଅନେକ ଉଚ୍ଚରେ । ଆଜିର ମତଲବୀ ରାଜନୀତି ଠାରୁ,
ତାଙ୍କର ଆସନ ଯେ କେତେ ଉପରେ ତୁ କଳ୍ପନା କରିପାରିବୁନି ସତ୍ୟ !

ସତ୍ୟ — ସେଇଥିପାଇଁ ଦାଦାଙ୍କୁ ଅନେକଥର କହିଲିଣି,
ଏ ରାଜନୀତିକୁ ସଜାଡ଼ିବାକୁ ହେଲେ,
ଆପଣ ପ୍ରତ୍ୟକ୍ଷ ଭାବରେ ରାଜନୀତିକୁ ଆସନ୍ତୁ ।
ଆଜି ଭଳି ଏ ସନ୍ଧିକ୍ଷଣରେ ତାଙ୍କ ଭଳି ଜଣେ ପ୍ରବାଦ ପୁରୁଷର ଆବିର୍ଭାବରେ ସବୁ ଓଲଟପାଲଟ ହେଇଯାଆନ୍ତା ।
ହେଲେ, ସେ କ'ଣ ମୋ କଥାରେ ରାଜି ହଉଛନ୍ତି ? ବିପ୍ଳବ !

ସତ୍ୟ — ହଁ, (ଚିନ୍ତିତ ହୋଇ)
ମୁଁ ସେଇଆହିଁ ଭାବୁଚି । ତାଙ୍କୁ ଆମେ ବୁଝେଇବା । ମୋର ବିଶ୍ୱାସ, ସେ ନିଶ୍ଚୟ ଆମ କଥା ରଖିବେ ।
ତାଙ୍କରି ଆଦର୍ଶରେ ଗଢ଼ା ଆମେ, ଦି'ଜଣ, ତାଙ୍କରି ବଳିଷ୍ଠ ଦୁଇବାହୁ ହେଇ କାମ କରିବା ।

# ଚତୁର୍ଥ ଆଲୋକ

*(ଚୌଧୁରୀ ମଣି ମିଶ୍ରଙ୍କ ପୂର୍ବ ସୁସଜ୍ଜିତ ଡ୍ରଇଂ ରୁମ୍ - ପାଖରେ ଠିଆ ହୋଇଛି ଦୁଃଶା)*

ବିପ୍ଳବ ଆଜ୍ଞା !
ସମସ୍ତେତ ଆଦର୍ଶ ରାଜନୀତିର କଥା କହୁଛନ୍ତି ।
ପନ୍ଦର ବର୍ଷ ହେଲାଣି ଆପଣଙ୍କ ପାଖେ ପାଖେ ରହିଛି,
ହେଲେ ଯାର ଠିକ୍ ଅର୍ଥଟା ଭାବିଲା ବେଳକୁ,
ମୋ ମୁଣ୍ଡଟା କାହିଁକି ଠିକ୍ ପଏଣ୍ଟରେ ଧରୁନି ।
କେମିତି ଗୋଳମାଳିଆ ହେଇଯାଉଛି ।
ମତେ ଟିକିଏ ଭଲକି ବୁଝେଇ ଦିଅନ୍ତେନି ।

ସତ୍ୟ (ହସି ହସି) ଏଇ ଦେଖ୍, ମୋର ବଙ୍ଗଳାଟା,
ପ୍ରତି ରୁମ୍‌ର କାନ୍ଥରେ କେତେ ମହାପୁରୁଷଙ୍କ ଛବି ଟଙ୍ଗାଯାଇଚି ।
କେବଳ ମୋର ନୁହଁ,
ପ୍ରତ୍ୟେକ ରାଜନୀତିଜ୍ଞଙ୍କ ଘରେ ଏମିତି ଦେଖିବାକୁ ପାଇବୁ ।
ସେମାନଙ୍କର ମହାନ୍ ଆଦର୍ଶ, ବ୍ୟକ୍ତିତ୍ୱକୁ
ଆମେ ସଦାସର୍ବଦା ସମ୍ମାନ କରୁଛେ । କିନ୍ତୁ,
ଏଥିରେ ବି ଗୋଟିଏ ଗୁଢ଼ ରହସ୍ୟ ରହିଛି ।

ଚୌଧୁରୀ : ଆରେ ବୋକା,
ଜଣେ ଆଦର୍ଶ ମହତ ପୁରୁଷକୁ ଆଖି ଆଗରେ ରଖି ନିଜର ଶ୍ରେଷ୍ଠ ସମ୍ମାନ ଜଣେଇ,
ଜନତା ଆଖିରେ ଭେଳିକି ଲଗେଇ ଦବାହିଁ ମୋ' ମତରେ
ଆଦର୍ଶ ରାଜନୀତି । ବୁଝିଲୁଟି । (ହସ)

ଦୁଃଶା (ହସହସି) ବୁଝିଗଲି ଆଜ୍ଞା !

ଚୌଧୁରୀ : କଣଟା ବୁଝିଲୁ ?
ଆରେ ଶୁଣ୍, ଦେଶ ଦଶର ହିତ ପାଇଁ, କାର୍ଯ୍ୟ କରିଥିବା
ନେତୃ ସ୍ଥାନୀୟ କର୍ଣ୍ଣଧାରମାନଙ୍କର ଯୋଉ ଲମ୍ବା ଲିଷ୍ଟଟା ରହିଚି,
ସେମାନଙ୍କର ଜୟନ୍ତୀ, ଶ୍ରାଦ୍ଧ ବାର୍ଷିକୀ ପାଳନ କରିବା,
ସେମାନଙ୍କ ଆଦର୍ଶବାଦ ଉର୍ପରେ ଭାଷଣ ଦେବା, ଦୁଃଖୀ ଦରିଦ୍ରଙ୍କ ପାଇଁ
ଆଖିରୁ ଲୁହ ଝରେଇବା, ଇତ୍ୟାଦି ... ଇତ୍ୟାଦି ... (ହସ) ବୁଝିଲୁ !

ଦୁଃଶା ହଁ ଆଜ୍ଞା !
ଏଥରକ ପୂରା ବୁଝିଗଲି । (ଉଭୟେ ହସି ଉଠିଲେ)

ଚୌଧୁରୀ : (ହସ)

ଦୁଃଶା ଯୋଉ ତିନିଟା ପାହାଚ କଥା ଆଗରୁ କହୁଥିଲେ –
କଳେ, ବଳେ, କୌଶଳେ !
ତା'ମାନେ – କଳରେ ଆଦର୍ଶ, ବଳରେ ଆଦର୍ଶ, ଆଉ କଉଶଳରେ ବି
ଆଦର୍ଶ (ହସ) ।

ଚୌଧୁରୀ : ବାଃ–ବାଃରେ ଦୁଃଶା । ଏତେ ଦିନପରେ ଦେଖୁଚି ତୋ ଭେଜାଟା ଠିକ୍
ଜାଗା ଧରିଛି (ହସ) । କିନ୍ତୁ ବିଛା ମନ୍ତ୍ର ନ ଜାଣି ...

ଦୁଃଶା ତେବେ ... (ଆଶ୍ଚର୍ଯ୍ୟ)

ଚୌଧୁରୀ : ଗୋଟିଏ କଥା ମନେ ରଖିଥିବୁ । ଯଦି ଆଉ କିଏ,
ଏ ଆଦର୍ଶବାଦ ଭିତରକୁ ଅଚାନକ ପଶି ଆସେ,
ତେବେ କ'ଣ କରିବାକୁ ହବ ଜାଣିଛୁତ ?

ଦୁଃଶା କ'ଣ ଆଜ୍ଞା ?

ଚୌଧୁରୀ : (ହସି ହସି) ହୁଁ, ଏଇଭଳି ଆଦର୍ଶ ରାଜନୀତିକୁ ନେଇ ଆମ ଭଳି କିଏ
ଖେଳ ଖେଳେ ତା' ହେଲେ ନୀତିଟାକୁ ବଦଳେଇ ଦବାକୁ ହବ ।

ଦୁଃଶା କିମିତି ଆଜ୍ଞା !

ଚୌଧୁରୀ : ସମୟ, ସୁବିଧା ଆଉ ସୁଯୋଗ ।
ଏହାରି ପ୍ରତୀକ୍ଷାରେ ରହିବାକୁ ହବ ।
ଏହି ତିନୋଟି 'ସ' ରାଜନୀତିଜ୍ଞଙ୍କ ସାଙ୍ଗରେ, ସହିତ ଓ ସଦାବେଳେ ଥିବ ।

ଦୁଃଶା କଥାଟା କ'ଣ ଠିକ୍ ଧରିପାରିଲିନି ଆଜ୍ଞା ।

ଚୌଧୁରୀ : ଏକ ଦୁର୍ବଳ ମୁହୂର୍ତ୍ତରେ ଏଇ ତିନୋଟି 'ସ'କୁ ବିନିଯୋଗ କରି,
ସେଇ ମଣିଷରୂପୀ ବଛାବଛା ମେଣ୍ଢା ଗୁଡ଼ାଙ୍କୁ
ବଶୀଭୂତ କରି ପରଦାର ଅନ୍ତରାଳରେ ଲଢ଼େଇ କରେଇ ଦବାଟା ହିଁ
ସେତେବେଳେ ବୁଦ୍ଧିମାନର କାମ ।
ଆଉ ତା'ପରେ ...

ଦୁଃଶା ତା'ପରେ ...

ଚୌଧୁରୀ : (ହସି) ତା'ପରେ ଆମେ ରହିବା ଫଳର ପ୍ରତୀକ୍ଷାରେ,
ଆଉ ଚେତେଇ ଦବା ...

ଦୁଃଶା ଚେତେଇ ଦବା । କ'ଣ ଆଜ୍ଞା !

ଚୌଧୁରୀ : ବର୍ଣ୍ଣବୋଧର ସେଇ ତିନୋଟି ଧାଡ଼ି !

ଦୁଃଶା କୋଉ ତିନି ଧାଡ଼ି ।

ଚୌଧୁରୀ : ''ଘଣ୍ଟା ବାଜେ ଠଣ୍ ଠଣ୍
ମେଣ୍ଢା ମୁଣ୍ଡଟି ବଡ଼ ଟାଣ
ତା ମୁଣ୍ଡିଆକୁ ସାବଧାନ''
ଆଉ ଆମ ବର୍ଣ୍ଣବୋଧ କ'ଣ କହୁଚି ଜାଣୁ ଦୁଃଶା ।
''ଘଣ୍ଟା ବାଜେ ଠଣ୍ ଠଣ୍
ଆମ ମେଣ୍ଢା ମୁଣ୍ଡ ବଡ଼ ଟାଣ
ତା ମୁଣ୍ଡିଆକୁ ସାବଧାନ'' (ଉଭୟେ ହସିଲେ)

ଅନ୍ଧାର

# ପଞ୍ଚମ ଆଲୋକ

*(ପାଣ୍ଡୁମାଷ୍ଟ୍ରଙ୍କ ଘର – ପାଣ୍ଡୁ ମାଷ୍ଟ୍ରେ ଖବର କାଗଜ ପଢ଼ି ଚାଲିଛନ୍ତି । କିଛି ସମୟ ପରେ ଚିନ୍ତା କରି – ମିନୁକୁ ଡାକିଛନ୍ତି)*

ପାଣ୍ଡୁମାଷ୍ଟ୍ରେ : ଆରେ ମା' ମିନୁ ....... ମିନୁ !

ମିନୁ (ଭିତରୁ) କ'ଣ ଦାଦା ... ଯାଉଛି ...

ପାଣ୍ଡୁମାଷ୍ଟ୍ରେ : (ଖବର କାଗଜ ଦେଖି ସାରି ଟେବୁଲ୍ ଉପରେ ଥୋଇ ପୁଣି ଚିନ୍ତାମଗ୍ନ)

ମିନୁ (ପ୍ରବେଶ) ଚା'ଟା କରୁଥିଲି ପରା... (ଚା ଦେଇଛି)

ପାଣ୍ଡୁମାଷ୍ଟ୍ରେ : ହଉ ହେଲା – ଦେଖିଲୁ – ପେପର Advertisementରୁ ଜଣା ପଡୁଛି ଏ ବର୍ଷ ତୋ Subjectରେ ପ୍ରାୟ ବେଶୀ Post ଅଛି ।

ମିନୁ ହଁ, ବିପ୍ଳବ ବାବୁ କହୁଥିଲେ – ବେଶୀ ଅଛି ।
ଦାଦା ... କେତେ Post ବାହାରିଛି ?

ପାଣ୍ଡୁମାଷ୍ଟ୍ରେ : ନେ ତୁ ନିଜେ ଦେଖ୍ ।
ମ୍ୟାଥ୍ ଆଉ ଫିଲୋସଫିରେ ସବୁଠୁଁ ଅଧିକ ...
(ମିନୁ ଦେଖିଛି)

ମିନୁ : ଦାଦା !
ତମେ ତ ଆଉ କାମକୁ ପାରୁନ । ସତ୍ୟ ଭାଇ, ଦେଖୁଛି, ସିଏ ତା' ନିଜ କାମରେ ସବୁବେଳେ ବାହାରେ । ସିଏ ବି ତା' ଧନ୍ଦାରେ ବ୍ୟସ୍ତ । ତାକୁ ତ ଫୁରସତ୍ ମିଳୁନି । ମୋର ଏ ଭିତରେ, ବାହାରେ କୋଉଠି ଯଦି ପୋଷ୍ଟିଂ ହୋଇଯାଏ – ତେବେ ମୋର ବଡ଼ ଚିନ୍ତା ।
କହିଲ ତମେ କେମିତି ଚଳିବ ?

ପାଣ୍ଣୁମାଷ୍ଟ୍ରେ : ଆଲୋ ମା !
ମୋ ପାଇଁ କାହିଁକି ଏତେ ବ୍ୟସ୍ତ ହଉଚୁ – ମୁ ଯେମିତି ହେଲେ ଚଳି ଯିବିନି – ଆଉ ସତ୍ୟ, କିଛି କରୁ ବା ନ କରୁ – ଜମିବାଡ଼ି ତ ଭାଗ ଲାଗିଚି, ପେଟ ଦିଟା ଅପୋଷା ରହିବନି – ଘରକାମ କଥା କହୁଚୁ ତ ? ଭାଇ, ନୂଆ'ଉ ସେ ପାରିକୁ ଯିବା ପରେ, ରନ୍ଧା ବଢ଼ା, ଘର କାମ, ସେଥିରେ ମାଷ୍ଟ୍ର ଚାକିରି କରି ପାଳି ପୋଷି, ତମମାନଙ୍କୁ ମଣିଷ କରିଛି ନା ନାହିଁ ?

ମିନୁ ଦାଦା !
ତମେ ରାଗିବନି ତ ? ଗୋଟେ କଥା କହିବି ।

ପାଣ୍ଣୁମାଷ୍ଟ୍ରେ : କହୁନୁ ... କ'ଣ କହିବୁ ।

ମିନୁ : ଯଦି ସତ୍ୟ ଭାଇକୁ ବାହା କରି ଦିଅନ୍ତେ ଭଲ ହୁଅନ୍ତା ।

ପାଣ୍ଣୁମାଷ୍ଟ୍ରେ : ଦେଖୁଚୁ ତ ତା'ର ଜିଦ୍ । ସେ କହୁଚି –
ତୋ କାମ ସରିଲେ ଯାଇ ତା' କଥା ।

ମିନୁ ନା, ଦାଦା !
ଏ ବୟସରେ ତମେ ଅନ୍ତତଃ ସୁଖରେ ରହିଲେ,
ମୁଁ ଯେତେବେଳେ ଛୁଟିରେ ଗାଁକୁ ଆସିବି
ଘରେ ନୁଆ'ଉ, ସତ୍ୟ ଭାଇ, ଆଉ ତମ ହସ ହସ ମୁହଁ ଦେଖିଲେ
ମୁଁ କେତେ ଖୁସୀ ହେବି, ଘର ଆମର ସରଗ ପରି ହସି ଉଠିବ ...

ପାଣ୍ଣୁମାଷ୍ଟ୍ରେ : ସିଏ ସିନା ରାଜି ହେଲେ ?

ମିନୁ ବିପ୍ଳବ ବାବୁ ଅଛନ୍ତି, ମୁଁ ଭାବୁଛି, କଥାଟା ଏଇଠି ପଡ଼ିଲେ ଭଲ ହୁଅନ୍ତା ।
ଆମ କଥାକୁ ସତ୍ୟ ଭାଇ ଜମା କାଟି ପାରିବନି ।

ପାଣ୍ଣୁମାଷ୍ଟ୍ରେ : ସତ୍ୟ ଆଉ ବିପ୍ଳବ କ'ଣ କରୁଛନ୍ତି ? ଜଳଖିଆ ଖାଇଛନ୍ତି ତ ?

ମିନୁ : ହଁ, ସେମାନଙ୍କୁ ଦେଇ ଆସିଥିଲି – ଯାଏଁ ଦେଖେ –

ପାଣ୍ଡୁମାଷ୍ଟ୍ରେ : ତୁ ଯଦି କହୁଛୁ, କଥାଟା ବିପ୍ଳବ ସାମ୍ନାରେ ମୁଁ ପୁଣି ଥରେ ସତ୍ୟକୁ ପଚାରିବି ।

ମିନୁ : ମୁଁ ସେମାନଙ୍କୁ ଡାକି ଦଉଚି । (ମିନୁର ପ୍ରସ୍ଥାନ)

*(ପାଣ୍ଡୁମାଷ୍ଟ୍ରେ ମିନୁର ଯିବା ବାଟକୁ ଅନେଇ ଦୃଷ୍ଟି ପୁଣି ଫେରେଇ ଆଣିଛନ୍ତି – ପାଖ ବହି ଥାକକୁ ଭାରତ ଇତିହାସର ସ୍ୱାଧୀନତା ସଂଗ୍ରାମ ସମ୍ପର୍କରେ ବହିଟି ବାଛି ଆଣି ପୃଷ୍ଠା ଓଲଟେଇବା ଭିତରେ ବିପ୍ଳବ ଓ ସତ୍ୟ ଆସିଛନ୍ତି । ପାଣ୍ଡୁ ମାଷ୍ଟ୍ରେଙ୍କ ଉପସ୍ଥିତି ସେମାନଙ୍କ ନଜରକୁ ଆସିନାହିଁ । ବିପ୍ଳବ ନିଜ ହାତରେ ପୁରୁଣା ଆଖି କାନ ଓ ପାଟି ବନ୍ଦ କରିଥିବା ତିନୋଟି ମାଙ୍କଡ଼ ମୂର୍ତ୍ତିକୁ ଦେଖିବା ପରେ ଧୂଳି ଲାଗିଯାଇଥିବା ମୂର୍ତ୍ତିଗୁଡ଼ିକୁ ସଯତ୍ନରେ ସଫା କରିବା ପରେ)*

ବିପ୍ଳବ : ଦେଖୁଚୁ ସତ୍ୟ !
ଏଇ ତିନି ମୂର୍ତ୍ତିର ଯୋଉ ଆଦର୍ଶ ଆମ ଛୁଆବେଳେ ସାର୍‌ ଆମକୁ ଶିଖେଇଥିଲେ, ତୋର ମନେ ଅଛି ନା ?

ସତ୍ୟ ହଁ, ଖରାପ ଦେଖିବା ନାହିଁ, ଶୁଣିବା ନାହିଁ, ଆଉ କହିବା ନାହିଁ,
ଏଇଆ ତ ?

ବିପ୍ଳବ ନା ।
ଗାନ୍ଧିଜୀ ଥିଲେ ବେଶ୍‌ ଦୂରଦୃଷ୍ଟି ସମ୍ପନ୍ନ ।

ସତ୍ୟ ମାନେ ?

ବିପ୍ଳବ : ସ୍ୱାଧୀନତା ପରର ଅନେକ ବର୍ଷକୁ ଅନ୍ତଃଚକ୍ଷୁରେ ଦୂରଦୃଷ୍ଟି ଦେଇ ସେ ଆଗୁଆ ପରଖିଛନ୍ତି –
ଯୋଉ ମାଙ୍କଡ଼ମାନଙ୍କ ହାତରେ ଦେଶ ଗଢ଼ିବାର
ଗୁରୁ ଦାୟିତ୍ୱ ନ୍ୟସ୍ତ କରିଥିଲେ, ସେମାନଙ୍କୁ ଏହି ମାଙ୍କଡ଼ମାନଙ୍କର ଏଭଳି ଅଭିନୟର ପରାକାଷ୍ଠାକୁ ସେ କିଛି ନ କରି ପାରିଥିଲେ ବି ତାଙ୍କର ସେଇ ଦୂରଦୃଷ୍ଟିର ଭାଷାରେ ଯଦି ବଞ୍ଚି ଥାଆନ୍ତେ
ପ୍ରାଞ୍ଜଳ ଭାବରେ ବୋଧହୁଏ ବୁଝାଇଥାଆନ୍ତେ ।

ପାଣ୍ଡୁମାଷ୍ଟ୍ରେ : (ଚମକି) କ'ଣ କହିବାକୁ ଚାହୁଁ ବିପ୍ଳବ ? (ଗମ୍ଭୀର ସ୍ୱର)

ବିପ୍ଳବ (ସାର୍‌ଙ୍କ ଉପସ୍ଥିତି ଦେଖି) ସାର୍ !
ଏଇ ମୂର୍ତ୍ତିକୁ ଦେଖି ମୋର ପିଲାଦିନର କଥା ମନେ ପଡ଼ିଥିଲା –
ଆମକୁ ଏହି ତିନିମାଙ୍କଡ଼ଙ୍କ ଆଦର୍ଶର କଥା କହି
ଆମକୁ ସେ ଦିନ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ କରିଥିଲେ,
କିନ୍ତୁ ...
ଆଜିର ଦେଶର ପରିସ୍ଥିତିକୁ ଦେଖିଲେ, ଏହି ତିନି ମାଙ୍କଡ଼ଙ୍କ ଏଇ ଅଦ୍ଭୁତ ଭାବଭଙ୍ଗୀର ଦୃଶ୍ୟ ଗାନ୍ଧିଜୀଙ୍କ ଦୃଷ୍ଟିରେ ବୋଧ ହୁଏ ଭିନ୍ନ ଥିଲା । ସେଇ କଥା କହୁଥିଲି ସତ୍ୟକୁ ।

ସତ୍ୟ କ'ଣ ଭିନ୍ନ ଥିଲା ? ବିପ୍ଳବ !

ବିପ୍ଳବ ସବୁ ଶୁଣୁଥିବ, କିଛି ଶୁଣିନ ବୋଲି କହିବ
ସବୁ ଦେଖୁଥିବ କିଛି ଦେଖିନ ବୋଲି କହିବ,
ସବୁ କହୁଥିବ କିନ୍ତୁ ଠିକ୍ ବେଳେ କିଛି କହୁ ନ ଥିବ ।

ପାଣ୍ଡୁମାଷ୍ଟ୍ରେ : ପ୍ରକୃତରେ ବିପ୍ଳବ !
ଭାବିଚିନ୍ତି କଥାଟା କହିଛୁ ଏତେ ଶୀଘ୍ର ଦେଶର ନେତା ଜନତାଙ୍କର ସ୍ଖଳନ ଘଟିବ ଏକଥା ଆମେ ଆଦୌ ବିଶ୍ୱାସ କରି ନ ଥିଲୁ ।
ଦେଶର ପରିସ୍ଥିତି ଯାହା – (ଚିନ୍ତିତ)

ସତ୍ୟ ଦେଶ ଆଜି ସ୍ୱାର୍ଥ କବଳିତ ...

ବିପ୍ଳବ : ଆଦର୍ଶ ମୂଲ୍ୟବୋଧକୁ ଜାବୋଡ଼ି ଧରି
ସତ୍ୟ ଅହିଂସାର ପରାକାଷ୍ଠାରେ ଉଦ୍‌ବୁଦ୍ଧ ହୋଇ
ନିଜ ଜୀବନ ବିନିମୟରେ କଷ୍ଟଲବ୍ଧ ସ୍ୱାଧୀନତାର ମୂଲ୍ୟକୁ ବୁଝି ନ ପାରି
କଣ୍ଠକୁ ଫଟାଇ ଆମେ ଯେତେ ପାଟି କଲେ ବି
ଆମେ କ'ଣ ଆଜି ସତରେ ସ୍ୱାଧୀନ ?
ସାର୍‌ଙ୍କ ପରି ସଂଗ୍ରାମୀମାନେ ଆଜି କ'ଣ ସତରେ ସନ୍ତୁଷ୍ଟ,
ଯୋଉ ସ୍ୱପ୍ନ ନେଇ ସେମାନେ ଆତ୍ମ ବଳିଦାନ ଦେବାକୁ ଟିକେ କୁଣ୍ଠିତ ନ ଥିଲେ ସେମାନଙ୍କର ସବୁ ସ୍ୱପ୍ନ କ'ଣ ଆଜି ସାର୍ଥକ ହେଇଛି ?

ପାଣ୍ଣୁମାଷ୍ଟ୍ରେ : ନା ।
କିଛି ସାର୍ଥକତା ଭିତରେ ବିଫଳତାର ଅନେକ ପଦଚିହ୍ନ ଆମକୁ କରିଛି
କ୍ଷତାକ୍ତ ।
ଏଇ ମାଙ୍କଡ଼ ତିନୋଟି ପରି
ଆମେ ଆଜି ପ୍ରାୟ ସମସ୍ତେ ସବୁ ଶୁଣୁଥିଲେ, ଦେଖୁଥିଲେ, କହୁଥିଲେ ବି
ଜାଣି ଶୁଣି ଆମେ
ଆଜି ଦୁଇ ହାତରେ ଆଖି କାନ ପାଟି ବନ୍ଦ କରିଦେଇଛେ ।
ବିପ୍ଳବ ତୁ ଠିକ୍ କହିଛୁ, ହଁ, ଠିକ୍ କହିଛୁ ।

ବିପ୍ଳବ ସମଗ୍ର ଦେଶର ପରିସ୍ଥିତିକୁ ଦେଖି ବସିଲେ, ସାର୍ !
ଆପଣମାନଙ୍କ ପରି ଅନେକ ସ୍ୱାଧୀନତା ସଂଗ୍ରାମୀ
ଦିନେ ଦେଶକୁ ଗଢ଼ିବାର ଯୋଉ ବଜ୍ର ଶପଥ ନେଇ
ବ୍ରିଟିଶର କୋରଡ଼ା ମାଡ଼କୁ ନ ଡରି
ଜେଲ୍ ଯାଇ ଦେଶକୁ ସ୍ୱାଧୀନ କଲେ, ସେମାନେ ଯେ ପୁଣି ଦେଶ ସ୍ୱାଧୀନ
ହେଲା ପରେ ଦେଶ ଠିକ୍ ବାଟରେ ଚାଲିଲା କି ନାହିଁ ନ ଦେଖି
ନୀରବ ନିସ୍ପୃହ ହେଇଗଲେ, ଭାବି ବସିଲେ, ମୁଁ ଠିକ୍ ବୁଝି ପାରେନା
ୟା'ର ଅର୍ଥ କ'ଣ ହୋଇପାରେ ?

ସତ୍ୟ କେବଳ କେତେକ ମୁଷ୍ଟିମେୟ ସ୍ୱାର୍ଥନ୍ୱେଷୀ
ରାଜନୈତିକ ଗୋଷ୍ଠୀଙ୍କ ମନ୍ଦ ଚିନ୍ତାଧାରା ପାଇଁ
ଆମର ଏ ଅବସ୍ଥା ! ପ୍ରତିହତ କରିବାକୁ
ସେମାନଙ୍କର ସଂଗଠିତ ବଳର ଅଭାବ ରହିଲା । ତେଣୁ ସେମାନେ ବାଧ
ହେଇ ପାଟି ଫିଟେଇବାକୁ ଭୟକଲେ
ତା'ଛଡ଼ା ସଂଗ୍ରାମୀମାନଙ୍କୁ ନେତୃତ୍ୱ ଦେବାକୁ,
ସେପରି ଦୃଢ଼ ନେତୃତ୍ୱର ଅଭାବ ବି ରହିଲା ।

ପାଣ୍ଣୁମାଷ୍ଟ୍ରେ : ଖାଲି ସେତିକି ନୁହେଁରେ...
ଭାରତ ମାତାର ବିଦୀର୍ଣ୍ଣ ହୃଦୟର ଆକୁଳ କ୍ରନ୍ଦନ,

ଆଜି ତୁମ ଯୁବପିଢ଼ିକୁ ଯେତିକି ଆନ୍ଦୋଳିତ କରୁଛି,
ତା'ଠାରୁ ଆମେ ଯୋଉମାନେ ଯା'ର ସାର୍ବଭୌମ୍ୟ,
ଆଉ ଜନ୍ମ ଜାତକରେ ସଂପୃକ୍ତ
ଆଜି ବୃଦ୍ଧ ।
ଚିନ୍ତା କରିପାରୁଛ, ସେମାନଙ୍କର ଅବସ୍ଥା ?
ପ୍ରତ ମୁହୂର୍ତ୍ତରେ ମାନସିକ ଯନ୍ତ୍ରଣାରେ ଆମେ କିଭଳି ଦିନ କାଟୁଛୁ ।

ବିପ୍ଳବ ସାର୍ ! ଦେଶର ନବେ ଭାଗ ଲୋକ ଅବଶିଷ୍ଟ ସ୍ୱାର୍ଥବାଦୀ ଲୋକଙ୍କ ଶାସନରେ ବିଚଳିତ – ହନ୍ତସନ୍ତ – ଉପାୟ ଶୂନ୍ୟ ।

ସତ୍ୟ ଚୌଧୁରୀ ମଣି ମିଶ୍ର ତିନି ତିନି ଥର ଏମ୍.ଏଲ୍.ଏ. ହେଲାଣି, କିନ୍ତୁ ଏ ଅଞ୍ଚଳରେ ଲୋକମାନଙ୍କର ଅବସ୍ଥା ଯାହା ଥିଲା ସେଇଆ ।
ବରଂ ତା'ଠାରୁ ଖରାପ ସିନା ଭଲ ନୁହଁ ।
ଖାଲି ନିଜର ପ୍ରତିପତ୍ତି ସଂପତ୍ତି ବଢ଼େଇ ଚାଲିଚି । ଗୁଣ୍ଡାମି ବଢ଼ିଛି ।

ପାଣ୍ଡୁ ସାରା ଭାରତ ବର୍ଷର ଅବସ୍ଥା ମଧ୍ଯ ସେଇଆ ।
ଆମର କଷ୍ଟଲବ୍ଧ ସ୍ୱାଧୀନତାର ମୂଲ୍ୟ କେହି ବୁଝିଲା ପରି ଲାଗୁନି ।
ଏଇଟା ମୋର ସବୁଠୁଁ ବଡ଼ ଦୁଃଖ ।

ସତ୍ୟ ଯୋଉଦିନ ଏଇ ଅନ୍ୟାୟ ଅତ୍ୟାଚାର ଖବର
ଖବରକାଗଜର ପ୍ରତି ପୃଷ୍ଠାରେ ଭରି ଯାଇଥାଏ–
ବିପ୍ଳବ ! ତୁ ବୁଝିପାରିବୁନି – ଦାଦା ସେଦିନ କାହାକୁ କିଛି ନ କହି,
ନ ଖାଇ ନ ପିଇ
ମଉନ ହେଇ କେତେ କୁଆଡୁ ଚିନ୍ତା କରନ୍ତି ।

ବିପ୍ଳବ : ଦେଶର ଏଭଳି ପରିସ୍ଥିତିରେ ଦୃଢ଼ ନେତୃତ୍ୱର ଆବଶ୍ୟକତା ରହିଛି –
ନଚେତ୍ ମତେ କାହିଁକି ଲାଗୁଛି ।
ଖୁବ୍ ନିକଟରେ ଦେଶ ପୁଣି ପରାଧିନ ହେଇଯିବ ।
ଦେଶ ପୁଣି ଖଣ୍ଡ ବିଖଣ୍ଡିତ ହେଇଯିବାର ଭୟ ମଧ୍ଯ ରହିଛି ।

ମିନୁ (ପ୍ରବେଶ) କ'ଣ ଗୋଟେ ଜୋରଦାର୍ ଆଲୋଚନା ଚାଲିଛି ?

ସତ୍ୟ ହଁ, ତୋ' ସହ କାଲି ସନ୍ଧ୍ୟାରେ ଆମେ କଥା ହଉଥିଲୁ ।

ମିନୁ ହଁ, ମୁଁ ଭାବୁଛି ...
ଦାଦା ଯଦି, ରାଜି ହୁଅନ୍ତେ – ତେବେ ଅନେକ କିଛି ହେଇପାରନ୍ତା ।
ମୁଁ ମଧ ଗଭୀର ଭାବେ ଚିନ୍ତା କରିଛି ।

ପାଣୁମାଷ୍ଟ୍ରେ : କ'ଣ ହେଇଚି ? କଥାଟା ସଫା ସଫା କହୁନୁ ?

ମିନୁ ତମେ ମୋ ଉପରେ ରାଗିବନି ତ ?

ପାଣୁମାଷ୍ଟ୍ରେ : ଆଲୋ ମା' ! (ହସି) ତୋ' ଉପରେ ମୁଁ କ'ଣ କେବେ ରାଗିଚି ।
ଜମା ରାଗିବିନି – କହୁନୁ – କହ ...... ଆଚ୍ଛା କହିଲୁ,
ମିନୁ ତୋ କଥା ମୁଁ କେବେ କାଟିଚି ?

ମିନୁ ତେବେ – Promise କଥା ରଖିବ ?

ପାଣୁମାଷ୍ଟ୍ରେ : ହଁ, Promise କହ .....

ମିନୁ ଏଇ ବିପ୍ଳବ ବାବୁ, ଆଉ ସତ୍ୟ ଭାଇ,
କଥାଟା ପ୍ରଥମେ ଆରମ୍ଭ କରିଛନ୍ତି । ମୁଁ ମଧ ଅନେକ ଭାବି ଚିନ୍ତି ଦେଖିଛି,
କଥାଟା ଆଦୌ ମନ୍ଦ ନୁହେଁ ।
ତମେ ଦାଦା ! କିନ୍ତୁ ରାଜି ହବାର ଅଛି ।

ପାଣୁମାଷ୍ଟ୍ରେ : ଆରେ କଥାଟା ଆଗ କହ ?

ମିନୁ : ଦେଶର ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ, ତମ ପରି,
ଦେଶ ଭକ୍ତ,
ନିଷ୍ଠାପର, ଆଦର୍ଶବାଦୀ କର୍ମୀଙ୍କର ନେତୃତ୍ୱର
ଅଭାବ ରହିଛି –
ଅନ୍ତତଃ ଦେଶବାସୀ କିଛି ତ ସୁଫଳ ପାଆନ୍ତେ ।

ପାଣୁମାଷ୍ଟ୍ରେ : କ'ଣ କହିବାକୁ ଚାହୁଁ ତୁ ?

ବିପ୍ଳବ : Exactly, ମୁଁ କଥାଟା ସ୍ପଷ୍ଟ କରିଦେଉଛି । ମିନୁ ଚାହାନ୍ତି –
ଦେଶର ମୁକ୍ତି ଲାଗି ନିଜର ସର୍ବସ୍ୱ ଜଳାଞ୍ଜଳି ଦେଇ,
ଆପଣ ଯେଉଁ ସଂଗ୍ରାମ କରିଥିଲେ
ପୁଣି ଥରେ ଆପଣ ସେଇ ସଂଗ୍ରାମରେ ଅବତୀର୍ଣ୍ଣ ହୁଅନ୍ତୁ ।

ପାଣ୍ଡୁମାଷ୍ଟ୍ରେ : ଆରେ ତମେମାନେ ଭୁଲିଯାଉଛ ।
ସ୍ୱାଧୀନତା ପରେ ଦେଶୀ ଧବଧବୋଲିଆ ରାଜନୈତିକ ନେତାଙ୍କ, ଆଦବ
କାଇଦାକୁ ଦେଖି ବିତୃଷ୍ଣା ଆସି ଯିବାରୁ,
ରାଜନୀତି ଛାଡ଼ି ମଣିଷ ଗଢ଼ିବା ପାଇଁ ଶିକ୍ଷକତାକୁ ଆଦରିନେଲି ।
ଆଜି ମୁଁ ଅବସରପ୍ରାପ୍ତ । ମୋର କ'ଣ ଆଉ ଆଗ ଭଳି ବଳ ବଅସ
ମାଡ଼ି ଆସୁଛି ।
ତମେମାନେ ମତେ ସେକଥା କୁହନା – ନା...

ସତ୍ୟ ସମୟ ଆପଣଙ୍କୁ ଅପେକ୍ଷା କରିଛି ।

ବିପ୍ଳବ ଆପଣଙ୍କ ପଛରେ ହଜାର ହଜାର ଲୋକ ଅଛନ୍ତି ।
ଏ ନିର୍ବାଚନରେ ଆପଣ ଥରେ ଠିଆ ହେଇ ପଡ଼ନ୍ତୁ; ଦେଖିବେ,
ଆପଣ ଏ ସଂଗ୍ରାମରେ ନିଶ୍ଚୟ ଜୟଯୁକ୍ତ ହେବେ ।

ମିନୁ ଦାଦା !
ତମେ Promise କରିଛ ନା – ମୋ କଥା କାଟିବନି –
Please ମନା କରନି ଦାଦା... ମନା କରନି –

ପାଣ୍ଡୁମାଷ୍ଟ୍ରେ : ଓଃ –
ବଡ଼ ଅଡୁଆରେ ପକାଇଲୁ ମା' –

ମିନୁ–ସତ୍ୟ : ଦାଦା ...

ବିପ୍ଳବ : ସାର୍ ! (ସମ ସ୍ୱରରେ)

ଅନ୍ଧାର

# ଷଷ୍ଠ ଆଲୋକ

*(ଚୌଧୁରୀ ମଣି ମିଶଙ୍କ ଡ୍ରଇଂରୁମ - ଚୌଧୁରୀ ଚିନ୍ତିତ - ଏପଟ ସେପଟ ହେଉଥାଆନ୍ତି - ଦୁଃଶା ପଛେ ପଛେ ଚାଲିଥିବ)*

ଚୌଧୁରୀ : ବଡ଼ ଅଡୁଆରେ ପକାଇଲା ବୁଢ଼ା ।

ଦୁଃଶା କହୁ ନଥିଲି ଆଜ୍ଞା !
ବୁଢ଼ାଟା ହୁକୁରୁ ହୁକୁରୁ ହଉଛି ।
ତାର ମାନ ସମ୍ମାନ ଯାହା, ଅଞ୍ଚଳ ଯାକର ଖାତିରି ପରା ତା' ପଛରେ ।

ଚୌଧୁରୀ : ବୟସ ପୁଣି ଯାହା,
ସେଥିରେ ରାଜନୀତିରେ ପଶିବା ମତେ କାହିଁକି,
କେମିତି କେମିତି ଲାଗୁଚି । ବୁଢ଼ା ପଛରେ ବୋଧହୁଏ... ।

ଦୁଃଶା ସେଇ ଟୋକାଏ ।
ତେବେ ଭାବିଚିନ୍ତି ପ୍ରତିକାର ବ୍ୟବସ୍ଥା କରିବାକୁ ହବ ।
ଅବଶ୍ୟ ସିଏ ଗୁରୁ ।

ଚୌଧୁରୀ : ଗୁରୁ ସାକ୍ଷାତ୍ ପରଂବ୍ରହ୍ମ ।
ସେ ହେଉଛନ୍ତି ଚିର ନମସ୍ୟ ।
ଜାଣୁ ଦୁଃଶା !
ସଭା, ସମିତି, ଆଚାର, ବ୍ୟବହାରରେ ମୁଁ ଆଦୌ କୁଣ୍ଠିତ ନୁହଁ ।
ଏ ଅଞ୍ଚଳରେ ସବୁଠୁଁ ବେଶୀ ମାନ ସମ୍ମାନ ମୁଁ ତାଙ୍କୁ ଦିଏ ।

ଦୁଃଶା : ତା' ବୋଲି, ଗୁରୁ ଯେ ଶିଷ୍ୟଠାରୁ ବଳେଇ, ଆଗେଇ ଯିବେ, ମୁଁ ତ କାହିଁକି ଭାବିପାରୁନି ।

ଚୌଧୁରୀ : ତୁ ଗୋଟିଏ କାମ କର । ଫୋନଟା ପାଖକୁ ଆଣିଲୁ (ଫୋନ ଡାଏଲ କରି) ହେଲୋ ......... କହୁଛନ୍ତି । ଆଛା ...... ଆଛା ...... ନମସ୍କାର । ଯୋଉ ଗାଡ଼ି କଥା କହୁଥିଲି ...... ଦି ଦିନ ତଳେ ଯୋଉଟା ସିଜ୍ କରିଥିଲେ .... ସେ ଗାଡ଼ିଟି ରମେଶ ବାବୁଙ୍କର ....... । ହଁ, ସେ ମୋର ଅତି ନିଜର ଲୋକ । Please ଦେଖିବେ (ଫୋନ ଦେଖି ଦୁଃଶା ଯଥା ସ୍ଥାନରେ ରଖିଲା)

ଦୁଃଶା କୋଉ ରମେଶ ବାବୁ ଆଜ୍ଞା ?

ଚୌଧୁରୀ : କଣ୍ଟ୍ରାକ୍ଟର ରମେଶ ଦାସ । ଗଲା ସନ ନରେନ୍ଦ୍ରପୁର ସୁମତୀ ନଦୀ ଉପରେ ବଡ଼ ବ୍ରିଜ କାମ ସିଏ କରିଥିଲେ, ସେଇ ।

ଦୁଃଶା ବୁଝିଗଲି ଆଜ୍ଞା ! ତାଙ୍କଠାରୁ ଯାହା ସାହାଯ୍ୟ ଚାହିଁବା, ସାହାଯ୍ୟ ମିଳିବ ।

ଚୌଧୁରୀ : ଏ ପାଖ Side ରୁ କିଛି ଅସୁବିଧା ନାଇଁ, ହେଲେ.....

ଦୁଃଶା : ହେଲେ, ସେ ପାଖର ଅସୁବିଧାଟା ରହିଯାଇଛି ।

ଚୌଧୁରୀ : (ହସ) ହୁଁ, ଏଇଠି ଆସିବ ଆଦର୍ଶ ରାଜନୀତି ।

ଦୁଃଶା ତେବେ କୋଉ ପାହାଚ ? ଉପର ?

ଚୌଧୁରୀ : (ମୁଣ୍ଡ ହଲାଇ) ଉହୁଁ ।

ଦୁଃଶା : ତଳ ?

ଚୌଧୁରୀ : (ମୁଣ୍ଡ ହଲାଇ) ଉହୁଁ ।

ଦୁଃଶା : (ହସି ହସି, ମଝି ପାହାଚର ଇଙ୍ଗିତ ଦେଇ) ତେବେ ବୁଝିଗଲି ଆଜ୍ଞା ।

(ଦୁହେଁ ହସି ଉଠିଲେ)

ଅନ୍ଧାର

# ସପ୍ତମ ଆଲୋକ

*(ପାଣୁମାଷ୍ଟ୍ରେଙ୍କ ପୂର୍ବ ବର୍ଣ୍ଣିତ ଘର । ମିନୁ ଖୁବ୍ ଉଦ୍‌ବିଗ୍ନ ମୁହଁରେ ଅନେକ ଚିନ୍ତା ବ୍ୟସ୍ତତାର ସ୍ୱଭାବ ବେଶ୍ ବାରି ହେଇପଡୁଛି – ହଠାତ୍ ସତ୍ୟର ପ୍ରବେଶ)*

ମିନୁ ସତ୍ୟ ଭାଇ, କ'ଣ ବୁଝିଲୁ ?

ସତ୍ୟ ତୁ କାହିଁକି ଏତେ ବ୍ୟସ୍ତ ହଉଚୁ, ତୁ ଗଲୁ ଖାଇବୁ ।

ମିନୁ ନା ...
ଦାଦା ନ ଆସିବା ଯାଏ, ମୁଁ ପାଣି ଛୁଇଁବିନି ।

ସତ୍ୟ ତୁ ତ ବୁଝୁନୁ କଥାଟା । ଦାଦା କୋଉଠି ରହି ଯାଇଥିବେ, ଆସିବେ । ତୁ ଏତେ ବ୍ୟସ୍ତ ହେଲେ କ'ଣ ହବ ? କିଛି ହେଇନି – ଗଲୁ ଖାଇବୁ ।

ମିନୁ କ'ଣ କିଛି ହେଇନି । ବିପ୍ଲବ ବାବୁ ତ ଭୁବନେଶ୍ୱରରୁ ଫେରିଲେଣି । ତୁ ମତେ ଲୁଚୋଉଚୁ । ସତ୍ୟଭାଇ ! ମୋ ରାଣ,
ସତ୍ୟଭାଇ କହ କ'ଣ ହେଇଚି । କହ...

ବିପ୍ଳବ (ପ୍ରବେଶ) କ'ଣ ହେଇଚି ?

ସତ୍ୟ : କିଛି ଖବର ପାଇଲୁ ?

ବିପ୍ଳବ ନା... (ଚିନ୍ତିତ)

ସତ୍ୟ ପାର୍ଟି ଅଫିସ ଯାଇଥିଲୁ ?

ବିପ୍ଳବ ହଁ ।

ସତ୍ୟ : ମନୁବାବୁ କ'ଣ କହିଲେ ?

ବିପ୍ଳବ : ତତେ ଫୋନରେ ଯାହା କହିଥିଲେ, ସେଇଆ ।

ସତ୍ୟ (ଗମ୍ଭୀର ହେଇ) ସୂର୍ଯ୍ୟକୁ ପିଇସାଙ୍କ ଗାଁକୁ ପଠେଇଥିଲି ଯେ, ସେ କାଇଁ ଏ ଯାଏ ଫେରିଲାନି !

ବିପ୍ଳବ (ଦୂରକୁ ଲକ୍ଷ୍ୟ କରି) ହେଇ ତ ସିଏ ଆସିଲାଣି - (ସୂର୍ଯ୍ୟର ପ୍ରବେଶ) ସୂର୍ଯ୍ୟ ! ସାର୍ ସେଠିକି ଯାଇଛନ୍ତି ?

ସତ୍ୟ ସାର୍ କ'ଣ ଏତେ ଦାୟିତ୍ୱହୀନ ହେଇଛନ୍ତି ଯେ ସେଠିକି ଯାଇଥାନ୍ତେ ।

ବିପ୍ଳବ : ବିପ୍ଳବ !
ଦାଦା ସେଠୁ କୋଉ ବସ୍ ଧରିଥିଲେ ପଚାରି ବୁଝିଲୁନି ?

ସତ୍ୟ ମନୁ ବାବୁ ନିଜେ ରିକ୍ସାରେ ଆଣି ବସ୍‌ରେ ବସେଇଥିଲେ ।
ସାର୍‌ଙ୍କ ହାତରେ କିଛି ପୋଷ୍ଟର ମଧ୍ୟ ଥିଲା ।
ବୁଧବାର ସାଢ଼େ ଚାରିଟାରେ ସେଠାରୁ ଗାଡ଼ି ବାହାରିଥିଲା ।

ବିପ୍ଳବ ସାଢ଼େ ଚାରି !
ମାନେ ସାଢ଼େ ଆଠ୍‌ରେ ବସ୍ ଆମ ଗାଁରେ ପହଞ୍ଚିବା କଥା ।
ଡେରି ହେଲେ ଘଣ୍ଟେ କି ଦି' ଘଣ୍ଟା ।
ଦଶ କି ଏଗାର ଭିତରେ ପହଞ୍ଚିବା କଥା ତ ।

ମିନୁ ତା'ହେଲେ ବସ୍‌ରୁ ଦାଦା କ'ଣ ଉଡ଼ିଗଲେ ? ଆସି ତିନି ଦିନ ହେଲାଣି ? ଅନ୍ତତଃ କାହାରି କିଛି ... ।

ସତ୍ୟ ପୋଷ୍ଟର ଗୁଡ଼ା ଧରି ଦାଦାତ କୁଆଡ଼େ ଯିବେନି । ବଡ଼ ଆଶ୍ଚର୍ଯ୍ୟ । ଦାଦା ... ତାହେଲେ .... ନା ... ମୋ ମୁଣ୍ଡ କିଛି କାମ କରୁନି ।

ସୂର୍ଯ୍ୟ ଏତେ ଅଧୈର୍ଯ୍ୟ କାହିଁକି ହଉଚୁ ।

ମିନୁ : ଏ ଭୋଟ ଧନ୍ଦାରେ, ଦାଦାଙ୍କ ଇଚ୍ଛା ବିରୁଦ୍ଧରେ,
ତାଙ୍କୁ ଏଥିରେ ପୁରାଇବା ଆଦୌ ଠିକ୍ ହେଲାନି ।

ବିପ୍ଳବ ଓହୋ - ତମେ ବୁଝୁନ କାହିଁକି, ମିନୁ !
କିଛି ଅଘଟଣ ଘଟିଥିଲେ ଚାରିଆଡ଼େ ହୁଲସ୍ଥୁଲ ହେଇସାରନ୍ତାଣି ।

ମୁଁ ନିଶ୍ଚିତ ଯେ, ସାର୍‌ଙ୍କର ସେପରି କିଛି ହୋଇନଥିବ ।
ଆରେ ସତ୍ୟ ! News ଆଉ Paper କୁ ଦେଖୁଛୁ ତ ?

ସତ୍ୟ : (ଘଣ୍ଟାକୁ ଦେଖି) ହଁ କିଛି ନାହିଁ । ଆରେ ରେଡ଼ିଓ ନିୟୁଜ ତ ଚାଲିଥିବ । ମିନୁ, ରେଡ଼ିଓଟା ଆଣିଲୁ ।

*(ମିନୁ ଦ୍ରୁତ ଗତିରେ ଯାଇ ରେଡ଼ିଓ ଆଣିଛି - ରେଡ଼ିଓ ଅନ୍ କରି ଆସିଛି)*

ସୂର୍ଯ୍ୟ ମୁଁ କ'ଣ କହୁଥିଲି କି

*(ସମ୍ବାଦ ଚାଲିଥିବ Background voice)*

"ଶେଷରେ ମୁଖ୍ୟ ସମ୍ବାଦ ପୁଣି ଥରେ-
ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଜଳ ବିଦ୍ୟୁତ ପ୍ରକଳ୍ପର ଉଦ୍‌ଘାଟନ ଉତ୍ସବ -
କେନ୍ଦ୍ର ସରକାରଙ୍କ ଦ୍ୱାରା ରାଜ୍ୟର ଷ୍ଟିଲ କାରଖାନାର, ଆଧୁନିକୀକରଣ ମଞ୍ଜୁରୀ - କଟକ ଭୁବନେଶ୍ୱର ରାସ୍ତା ଦୁର୍ଘଟଣାରେ ଚାରିଜଣଙ୍କର ପ୍ରାଣହାନୀ ଓ ସୁନ୍ଦରପୁର ନିର୍ବାଚନ ମଣ୍ଡଳୀର ପ୍ରାର୍ଥୀ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପ୍ରାଣକୃଷ୍ଣ ପାଟଯୋଶୀଙ୍କର ସନ୍ଦେହଜନକ ଭାବରେ ସୁବର୍ଣ୍ଣପୁର ନଦୀ ଘାଟରେ ଶବ ଉଦ୍ଧାର - (ମିନୁର କାନ୍ଦ ଆରମ୍ଭ) -
ସୁବର୍ଣ୍ଣପୁର ନିର୍ବାଚନର ଭୋଟ ଅନିର୍ଦ୍ଦିଷ୍ଟ କାଳ ପାଇଁ ସ୍ଥଗିତ -
ଆମର ପରବର୍ତ୍ତି ସମ୍ବାଦ ସନ୍ଧ୍ୟା ୬.୫୦ ମିନିଟ୍‌ରେ" (କାନ୍ଦର ଗତି ଜୋରରେ ବଢ଼ିବ)

ମିନୁ : ନା ... (କାନ୍ଦିଛି)

ବିପ୍ଳବ : ସୁବର୍ଣ୍ଣପୁର ଘାଟରେ ସାର୍‌ଙ୍କ ଶବ ! ଆଶ୍ଚର୍ଯ୍ୟ ।

ସତ୍ୟ : ମୋ ଦାଦାଙ୍କୁ କିଏ କାହିଁକି ମାରିବ ।

ସୂର୍ଯ୍ୟ ମୁଁ ବିଶ୍ୱାସ କରି ପାରୁନି । ଭୁଲ ସମ୍ବାଦ ଆସିଥାଇପାରେ ।

ବିପ୍ଳବ : ସତ୍ୟ !
ଥାନାରୁ ଆମକୁ ଏ କଥାର ସତ୍ୟାସତ୍ୟ ବୁଝି
ସୁବର୍ଣ୍ଣପୁର ଘାଟକୁ ଯିବାକୁ ହବ । ଚାଲ ସମସ୍ତେ ଚାଲ ।

ମିନୁ : ମୁଁ ବି ତମମାନଙ୍କ ସାଙ୍ଗରେ ଯିବି ।

ସତ୍ୟ : ନାଁ ।

ମିନୁ : ସତ୍ୟ ଭାଇ ! ତୁ ମତେ ମନା କରନା ! (କାନ୍ଦି କାନ୍ଦି)

ବିପ୍ଳବ : ଏ ଘଡ଼ି ସନ୍ଧି ମୁହୂର୍ତ୍ତରେ ତମେ ଏତେ ବ୍ୟସ୍ତ ହେଲେ ଚଳିବ ମିନୁ ?

ସୂର୍ଯ୍ୟ ଚାଲ, ଏହାର ସତ୍ୟାସତ୍ୟ ଜାଣି ଖୁବ୍ ଶୀଘ୍ର ଫେରି ଆସିବା । (ସମସ୍ତେ ଚାଲିଗଲେ)

ମିନୁ : ସତ୍ୟ ଭାଇ ! (କାନ୍ଦିଛି)
(ସଙ୍ଗୀତ ସହ ମିନୁର କାନ୍ଦର ଗତି ଧିରେ ଧିରେ ବଢୁଥିବ)

ଅନ୍ଧାର

# ଅଷ୍ଟମ ଆଲୋକ

*(ଚୌଧୁରୀ ମଣି ମିଶ୍ରଙ୍କ ଡ୍ରଇଂରୁମ୍ - ଦୁଃଶା ଭାଷଣ ଦେବା ଭଙ୍ଗୀରେ ଠିଆହେଇଚି - ମାଇକ୍ରୋଫୋନ ନ ଥାଇ ମଧ ନିଜ ହାତ ମୁଠାକୁ ମାଇକ୍ରୋଫୋନ ସାଦୃଶ୍ୟ କରି ଭାଷଣ ଅଭ୍ୟାସ କରିଛି)*

ଦୁଃଶା : ମୋର ପୂଜନୀୟ ଗୁରୁଜନମାନେ !
ମା', ଭାଇ ଓ ଭଉଣୀମାନେ ! ଆଉ ମୋର ପ୍ରିୟ ବନ୍ଧୁଗଣ !
ଆଜିର ଏଇ ନିର୍ବାଚନ ରଣଭୂମିରେ ଅନେକ କଥା ଆପଣମାନଙ୍କ ପାଖରେ ଉପସ୍ଥାପନ କରିବାର ଅଛି ।
ଆମେ ଆଗରୁ ଆସିଥିଲୁ, ଆଜି ବି ଆସିଛୁ, ଆସନ୍ତା ନିର୍ବାଚନରେ ଆସିବୁ ବୋଲି ଆପଣମାନଙ୍କ ସାହାଯ୍ୟ ଭିକ୍ଷା କରୁଛୁ ।
ଯାହାକୁ ଆପଣମାନେ ମୋହର ଲଗାଇ ଭୋଟ ଦେବେ,
ଭଲଭାବେ ବୁଝିସୁଝି ଦେବେ । ମିଛ ପ୍ରତିଶ୍ରୁତିରେ ଭୁଲନ୍ତୁ ନାହିଁ ।
ବନ୍ଧୁଗଣ ! କାଳେ ନାଇଁ, ବେଳେ ନାଇଁ, ଭୋଟବେଳେ ମାଇଁ ମାଇଁ ।
ବନ୍ଧୁଗଣ ! ଆପଣମାନେ ଜାଣିଛନ୍ତି, ଏଇଟା ଆମର ଜନାର୍ଦ୍ଦନ ପାର୍ଟି ।
ଜନତା ଜନାର୍ଦ୍ଦନ ପାର୍ଟି ।
ଆପଣମାନେ ଆସନ୍ତା ନିର୍ବାଚନରେ ଆମର ପ୍ରିୟ ନେତା, ଚୌଧୁରୀ ମଣି ମିଶ୍ର, ଯେକି ଆପଣମାନଙ୍କ ପାଇଁ ରାସ୍ତା, ଘାଟ, କୂଅ, ପୋଖରୀ, ଥାନା, ପାଇଖାନା, ଡାକ୍ତରଖାନା ଇତ୍ୟାଦି ... ଇତ୍ୟାଦି କରିଛନ୍ତି, ବିଲୁଆ ଚିହ୍ନରେ ମୋହର ମାରି ତାଙ୍କ ହାତମୁଠାକୁ ଟାଣ କରନ୍ତୁ, ଆଉ ଆପଣମାନେ ଏକ ସଙ୍ଗରେ କୁହନ୍ତୁ - ଚୌଧୁରୀ ବାବୁ ଜିନ୍ଦାବାଦ - ବିଲୁଆ ଚିହ୍ନ ଜିନ୍ଦାବାଦ ।

ଚୌଧୁରୀ : (ତାଳିମାରି ପ୍ରବେଶ) ବାଃ - ବାଃରେ ଦୁଃଶା !
ଭାଷଣ Practice ଠିକ୍ ଚାଲିଚି ତେବେ ।

ଦୁଃଶା : (ଲାଜେଇ) ନାଇଁ ଯେ, ଭୁଲି ଯାଇଥିଲି ତ ... ।

ଚୌଧୁରୀ : ଟିକେ ଗଣ୍ଡଗୋଳ ହେଇଗଲାରେ ଦୁଃଶା !

ଦୁଃଶା : ଗଣ୍ଡଗୋଳ !

ଚୌଧୁରୀ : ବୁଢ଼ା ସିନା ସଫା । ହେଲେ ଇଲେକ୍‌ସନ୍ କାଉଣ୍ଟରମେଣ୍ଡଡ୍ ।

ଦୁଃଶା : କାଣ୍ଡତେ ନା ମେଣ୍ଡେତେ । ଆଜ୍ଞା !
ସେଇଟା ପୁଣି କି ଜିନିଷ ? କାନ ଉଠିଲା ଦିନୁ ଶୁଣିନି ।

ଚୌଧୁରୀ : ଧେତ୍ ତେରିକା । ଅପଗଣ୍ଡ ମୂର୍ଖ ।
ଆରେ ଇଲେକ୍‌ସନ୍ ଦି'ମାସ ଘୁଞ୍ଚିଗଲା । ବୁଝିଲୁ ।

ଦୁଃଶା ଦି'ମାସ ... ତେବେ ତ ହାତକୁ ସମୟ ମିଳିଗଲା ।
ମୋତେ ସେ କଥା ଖୋଲିକି କହୁନାହାଁନ୍ତି, ମୁଁ ବୁଝି ଥାଆନ୍ତି କେମିତି ?
ପାଣ୍ଡୁମାଷ୍ଟ୍ରେ ଯଦି ମରି ନଥାନ୍ତେ ଯାହା ମତେ ଜଣାପଡୁଥିଲା,
ଲୋକ ତ ଯେଭଳି ମେଣ୍ଢା, ଖାଲି ପ୍ରଗତି ପାର୍ଟିରେ,
ଠେକୁଆ ଚିହ୍ନରେ, ମୋହର ବାଡ଼େଇ ବାଡ଼େଇ ଧୂଳା ଉଡ଼େଇ ଦେଇଥାଆନ୍ତେ ।
ଯାହା ଭଗବାନ କରନ୍ତି ପ୍ରାଣୀର ମଙ୍ଗଳ ପାଇଁ ।

ଚୌଧୁରୀ : (ବିରକ୍ତିରେ) ମୁଁ ଦେଖୁଚି ତୋ ମୁଣ୍ଡରେ ଖାଲି ଗୋବର ଅଛି ।

ଦୁଃଶା ଆଜ୍ଞା !
ଆପଣ ଖାଲି ତ ବିରକ୍ତ ହେବେ । ଯା କହୁଛନ୍ତି, ତା' ଠାରୁ ଅଧିକା କରୁଚି ବରଂ କମ୍ ନୁହେଁ ।
ଛେଳିର ଛଅ ଗୋଡ଼ କହିଲେ ଏଇ ଦୁଃଶା,
ଆଉ ଚାରିଟା ଯୋଡ଼ି ଦଶ କହୁଛି । ତିନି ଯାଇ ଚାରିରେ ପଡ଼ିଲାଣି ।
ଆପଣ ଏମ୍.ଏଲ୍. ଏ ହେଇ ନାଁ କମେଇଛନ୍ତି । ମତେ କିନ୍ତୁ ଏ ବାର ସରପଞ୍ଚଟିଏ କରି ଦିଅନ୍ତୁ, ନହେଲେ ମୋ ତିରିଲା ମତେ ଘରେ ପୁରେଇବନି ।

ଚୌଧୁରୀ : ହଉ ହେଲା । ଆଗ ଇଲେକ୍‌ସନ୍‌ଟା ସରୁ ।
ଆଚ୍ଛା ତୁ ଗୋଟେ କାମ କର ।
ତୁ ଯାଇ ଇନ୍‌ସିପେକ୍ଟର ବାବୁଙ୍କୁ ଟିକିଏ ଖବର ଦେଇ ଆ ।

ଦୁଃଶା ହଉ ମୁଁ ଚାଲିଲି । (ପ୍ରସ୍ଥାନ)

ଚୌଧୁରୀ : ଦିନେ ନାଇଁ, କାଳେ ନାଇଁ, ଯୁଆନ ଟୋକାଏ କି ମନ୍ତ୍ର ଫୁଙ୍କିଲେ ଯେ, ଏକାବେଳକେ ପାଣ୍ଡୁମାଷ୍ଟ୍ରେ ଡେଇଁ ପଡ଼ିଲେ । ହୁଁ, ହଇ ହେ, ଆଜି କାଲିର ରାଜନୀତି – ସେଥିରେ ମିଶିବାକୁ ହେଲେ, ବୁଝି ବିଚାରୀ ମକିଶିବା ଉଚିତ ନା ? ବୁଢ଼ା ଭାବିଥିଲା – ବିଲାତି ହାତରୁ ଶାସନ ଛଡ଼େଇବା ଯାହା ଆମ ଦେଶୀଙ୍କ ଠାରୁ ସେଇଆ । ବେଶ୍ ବୁଢ଼ା ପାନେ ପାଇଚି । ହରିଆ ମା'ର ବୟାନକୁ ତାରିଫ କରିବା କଥା । ଲାଲୁ ବୁଦ୍ଧି ବି କମ୍ ନୁହଁ । (ଲାଲୁକୁ ଡାକି) ଲାଲୁ ! ଲାଲୁ !

ଲାଲୁ (ପ୍ରବେଶ) ଆଜ୍ଞା !

ଚୌଧୁରୀ : କ'ଣ ହେଲା ସେ କାମ ?

ଦୁଃଶା ପ୍ରଚାର କାମ ସାରିଛି । ଟାଉନ୍ ହଲ୍‌ରେ ଆଜି ଶୋକସଭା ହବ ।

ଚୌଧୁରୀ : ବଡ଼ ଗଜରା ହାରଟେ ଆଣିଛୁ ତ ?

ଦୁଃଶା : ହଁ, ସଭା ବେଶ୍ ଜମିବ । ବହୁତ ଲୋକ ହେବେ ।

ଚୌଧୁରୀ : ଖାଲି ଜମିବନି ।
ଅନର୍ଗଳ ଭାଷଣ ବି ବାହାରିବ । (ଗଳା ସଫା କରି ଛଳନାରେ କାନ୍ଦି) ବନ୍ଧୁଗଣ !
ଆଜି ଆମ ଗହଣରେ ପାଣ୍ଡୁମାଷ୍ଟ୍ରେ ନାହାନ୍ତି । ଏଧରାରେ ପାଣ୍ଡୁମାଷ୍ଟ୍ରଙ୍କ ଭଳି ଲୋକ ଜନ୍ମ ହେବେନି କି ହେଇ ନାହାଁନ୍ତି । ଆସନ୍ତୁ ଆଜି ଆମେ ସମସ୍ତେ ପ୍ରତିଜ୍ଞା କରିବା, ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହେବା । (ସ୍ୱର ବଦଳାଇ) ଆଉ ତାପରେ, ତାଙ୍କର ଗୁଣ କୀର୍ତ୍ତନ, ତାଙ୍କ ଫଟୋ ଚିତ୍ରରେ ମାଲ୍ୟାର୍ପଣ, ଇତ୍ୟାଦି ... ଇତ୍ୟାଦି (ହସ)

ଲାଲୁ : ଜାଣେ ପରା । ସମଝଦାର୍ ଆଦିମ୍‌ର ଇସାରା କାଫି ।

ଚୌଧୁରୀ : ହଇରେ ଲାଲୁ !

ସେ ଜବର ମାଇକିନିଆଟାକୁ ତ ବେଶ୍ ଫସେଇ ଦେଲୁ ।

ଏତେ ବଡ଼ ସଭାଟାରେ ବଡ଼ ସାହାସ କରି କଥାଟା କହିଦେଲା ।

ଲାଲୁ : ଆଜ୍ଞା ! ମୋର ବଡ଼ ସନ୍ଦେହ ଥିଲା ।

କାଳେ ଏତେ ଲୋକଙ୍କୁ ଦେଖି ଚିହିଁକି ଉଠିବ । କିଛି କହିବନି କି ?

ହେଲେ ବି ହାତର ଓଢ଼ଣା ଟାଣି ଗଳ ଗଳ କରି ଯାହା ଶିଖେଇଥିଲେ

ହରିଆ ମା କଥା ଗୁଡ଼ାକ କହିଦେଲା । (ମାଇଚିଆ କଣ୍ଠ ସ୍ୱରରେ)

"ପାଣ୍ଡୁମାଷ୍ଟ୍ରଙ୍କ ସହିତ ମୋର ମିଳାମିଶା ଆଜିର ନୁହଁ, ଅନେକ ଦିନର ।

ସେ ମୋ ସୁଖ ଦୁଃଖର ସାଥୀ । ସେ ଦିନ ମାଛି ଅନ୍ଧାର ସଞ୍ଜବେଳେ ।

ପାଣ୍ଡୁମାଷ୍ଟ୍ରେ ଆମ ଘରକୁ ଆସିଥାନ୍ତି । କବାଟଟା ଦର ଆଉଜା ଥିଲା ।

ଆମ ଦି'ଜଣଙ୍କୁ ଏକାଠି ଦେଖି ଲାଲୁ ମଙ୍ଗରାଜ ଚିହିଙ୍କି ଉଠିଲେ । ଆମକୁ

ବେଇଜିତ କଲେ ।"

ଚୌଧୁରୀ : ଆରେ ନ କହିବ କିମିତି ।

ଚୋରି କେଶ୍‌ରେ ହରିଆକୁ ଠୁଙ୍କି ନ ଥିଲେ

ସବୁ ବେଙ୍ଗା ହେଇ ଯାଇଥାଆନ୍ତା ।

ସେ ଯୋଉ ମାଇକିନିଆ, ତାକୁ କଣ ମନ୍ତ୍ର ଯନ୍ତ୍ର କିଛି କାଟୁ କରିଥାଆନ୍ତା ।

ବୁଝିଲୁ ଲାଲୁ ! ଚୌଧୁରୀ ମଣି ମିଶ୍ରର ଚକ୍ରବ୍ୟୂହ ଭିତରେ ଯିଏ ଥରେ

ପ୍ରବେଶ କରିସାରିଛି, ମୁକୁଳିବାର ଆଉ ଉପାୟ ନାହିଁ ।

ଲାଲୁ : ହରିଆ ମା'ର କଥାଟା ବିଜୁଳି ଭଳିଆ ଖେଳିଗଲା ।

ଏଥିରେ କୋଉ ମୁହଁରେ ବଞ୍ଚିଥାଆନ୍ତା ପାଣ୍ଡୁମାଷ୍ଟ୍ରେ ।

ସବୁଦିନ ପାଇଁ ଚୌଧୁରୀଙ୍କ ଆଖି ଆଗରୁ ପାଣ୍ଡୁମାଷ୍ଟ୍ରେ ଅନ୍ତର୍ଦ୍ଧାନ

ହେଇଗଲା । ବାର ବର୍ଷର ତପ ଶୁଖୁଆ ଝୋଳରେ ଗଲା, ଆଜ୍ଞା ।

ଚୌଧୁରୀ : ମୋର କିଛି ଦୋଷ ନାହିଁ । ମୁଁ କ'ଣ କହିଥିଲି ପାଣ୍ଡୁମାଷ୍ଟ୍ରଙ୍କୁ ଇଲେକ୍‌ସନ୍‌ରେ ଠିଆ ହବାକୁ ?

ଲାଲୁ : ନାଇଁ ଯେ, ଯଦି ହରିଆ ମା' ରାଜି ହେଇ ନ ଥାଆନ୍ତା,
ତେବେ କ'ଣ ହେଇଥାଆନ୍ତା । କେମିତି ମଜା ହେଇଥାଆନ୍ତା ।

ଚୌଧୁରୀ : ଚୁପ୍ ବେ – (ଚାପୁଡ଼ା ମାରିବା)

ଲାଲୁ : ମତେ ମାଇଲେ ।

ଚୌଧୁରୀ : କହିଲା କ'ଣ ନା କେମିତି ମଜା ।
ହଇବେ ମିଛ ଆସିଲା କୋଉଠୁ । ଶହେରୁ ଶହେ ସତ । କରାମତି ଅଛି ବୋଲି ବାଘ ଛେଳିକୁ ଗୋଟାଏ ଘାଟରେ ପାଣି ପିଆଉଛି । (ହସି)

ଦୁଃଶା : (ପ୍ରବେଶ) ପ୍ରେସ୍‌ବାଲା ଆସିଛନ୍ତି । ଶୋକବାର୍ତ୍ତା ଆପଣଙ୍କଠୁଁ ନେବେ ।

ଚୌଧୁରୀ : ଲାଲୁ ! ତୁ ପ୍ରେସ୍ ବାବୁମାନଙ୍କୁ ଭଲ କି ଚର୍ଚ୍ଚା କର । ନହେଲେ ଏତିକି ବେଳେ ଖାଁଚଟାଏ ମାରିବେ ଯେ ଆଉ ଉଠି ପାରିବାନି ।

ଲାଲୁ : ଠିକ୍ ଅଛି ଆଜ୍ଞା (ପ୍ରସ୍ଥାନ)

ଚୌଧୁରୀ : ଶୋକସଭା ପାଇଁ ତତେ ଯାହା ସବୁ କହିଥିଲି, ହେଇଯାଇଛି ତ ?

ଦୁଃଶା : ସେଥିରେ ହେଲାନାହିଁ । ହରିଆ ମା' ଦେଖା ହେଇଥିଲା ଯେ କହୁଥିଲା, ଆସିବ ବୋଲି, ମୁଁ କିନ୍ତୁ ତାକୁ ଘଉଡ଼େଇ ଦେଇଚି ।

ଚୌଧୁରୀ : ଭଲ କଲୁ । ବହୁତ ଭଲ କଲୁ । ଆଉ କ'ଣ କହୁଥିଲା ।

ଦୁଃଶା କହୁଥିଲା, ବାପ ଛେଉଣ୍ଡ ପିଲାଟା, କେତେ କଷ୍ଟରେ
ବିନା ଦରମାରେ ବଡ଼ ହାକିମ ପାଖରେ ପାଞ୍ଚବର୍ଷ ବେଠି ଖଟି ଚାକିରିଟାଏ ପାଇଥିଲା ।
ହରିଆକୁ ଟିକେ ପୋଲିସରୁ ମୁକୁଳାଇ ଆଣି ଚାକିରିଟା ଫେରେଇ ଦିଅ ।

ଚୌଧୁରୀ : ଆରେ ହରିଆ ପାଇଁ ସବୁ କରିବି । ଟିକିଏ ସବୁର୍ କର । ଇନିସ୍‌ପେକ୍ଟରଙ୍କୁ ପରା ଡକେଇଚି । ହରିଆ ମା'କୁ ଦେଖାଦେଲେ ତାଗିଦ୍ କରିଦେବୁ । କଥାଟା ଯେପରି କାନକୁ ଦି'କାନ ନହୁଏ ।

ଦୁଃଶା ଲାଲୁ କହିଦେଲେ ଆଉରି ଭଲ ହବ ।

ଚୌଧୁରୀ : ଠିକ୍ ଅଛି ତୁ ଯା ।

(ଦୁଃଶା ପ୍ରସ୍ଥାନ କରିବା ସମୟରେ ଇନିସ୍‌ପେକ୍ଟରଙ୍କୁ ଦେଖି)

ଦୁଃଶା ଇନିସ୍‌ପେକ୍ଟର ବାବୁ ଆସିଲେଣି ।

ଇନ୍ସପେକ୍ଟର: ମର୍ଣ୍ଣିଙ୍ଗ୍ ସାର୍ !

ଚୌଧୁରୀ : ଆସନ୍ତୁ ! ଆସନ୍ତୁ ! ଇନ୍ସପେକ୍ଟର ବାବୁ ! ବସନ୍ତୁ !
ଦୁଃଶା ! ଇନ୍ସପେକ୍ଟରଙ୍କ ପାଇଁ ଟିକେ ଥଣ୍ଡା ବ୍ୟବସ୍ଥା କର ।

(ଦୁଃଶାର ପ୍ରସ୍ଥାନ)

ଆଉ ଇନ୍ସପେକ୍ଟର ବାବୁ ! କ'ଣ ସବୁ ଖବର । ମୁଁ ଦେଖୁଚି, ଆପଣ ଆଜିକାଲି ଆମକୁ ଭୁଲିଗଲେଣି ।

ଇନ୍ସପେକ୍ଟର: ନାଇଁ ସାର୍ ! ଟିକିଏ ଡିଉଟି ଅଧିକ ହଉଚି । ହରିଆ ମା' ଟା ସେଦିନ ସକ୍‌ସକ୍ ହେଇ କାନିରେ ଲୁହ ପୋଛି ଯାଉଥିଲା ।
କ'ଣ ହେଲା କି ଆଉ ତା'ର ?

(ଦୁଃଶା ଟ୍ରେରେ କୋଲ୍ଡ ଡ୍ରିଙ୍କସ୍ ଧରି ଆସିଛି)

ଚୌଧୁରୀ : କିଛି ହେଇନି ତା'ର । ମାଇପି ଲୋକ ତ ।
ଲାଲୁର କଡ଼ା କଥାଟା ହୁଏତ ସମ୍ଭାଳିପାରିନି । ହଁ ଛାଡ଼ନ୍ତୁ ସେକଥା ।
ଆଉ ସବୁ ଖବର କ'ଣ ? ସେ ରିପୋର୍ଟ କଥା କଣ କଲେ ?

ଇନ୍ସପେକ୍ଟର: ଏସ୍.ପି. ଇନ୍‌କ୍ୱାରୀ କରି ଫେରିଛନ୍ତି । ଚାର୍ଯ୍ୟ ସିଟ୍ ସମିଟ୍ ହବ । Case true but no clue.
ଡାକ୍ତରଙ୍କ ରିପୋର୍ଟ ଅନୁଯାୟୀ ଟ୍ରକ ଧକ୍କାରେ ପାଣ୍ଡୁମାଷ୍ଟ୍ରେଙ୍କ Death ହେଇଚି ।

ଚୌଧୁରୀ : ହଁ ଡାକ୍ତରଙ୍କୁ ଲାଲୁଟା ବହୁତ କଷ୍ଟରେ ମନେଇଥିଲା ।
ଆଉ ସେ ଟୋକା ଗୁଡ଼ାଙ୍କର କଥା କେତେ ବାଟ ଆଗେଇଲା ?
(ଟ୍ରେ ନେଇ ଦୁଃଶାର ପ୍ରସ୍ଥାନ)

ଇନ୍ସପେକ୍ଟର: କ'ଣ ସାର୍ ଆଉ ଆଗେଇବ ?
ମୁଁ ଚାବିଟା ପକେଇ ପୁରା ଜଉମୁଦ କରି ଦେଇଚି ।
କାଠିଟା ଏବେ ମୋ ହାତରେ ।

ଚୌଧୁରୀ : Really you are a very intelligent police officer, ସେଇଥି ପାଇଁ ସେଥର ଡି.ଜି.ଙ୍କ ପାଖରେ ଜିଦ୍ ଧରି ଆପଣଙ୍କର ଟ୍ରାନସଫର୍ ଅର୍ଡ଼ର କ୍ୟାନସେଲ୍ କଲି ତାପରେ ହାତରେ ଅର୍ଡ଼ର ଧରି ଆସିଲି ।

ଇନ୍ସପେକ୍ଟର: ହଁ ସାର୍ ! ପୋଲିସ ଚାକିରି ଯେତେବେଳେ,
କ୍ଷୁର ଧାରରେ ଚାଲିଲେ ବି ବିପଦ ଗୋଡ଼େ ଗୋଡ଼େ ଅଛି ।
ଆପଣମାନଙ୍କ ସାହା ଭରସାରେ ଚାଲିବା କଥା ।

ଚୌଧୁରୀ : ହଁ, ମେଣ୍ଢା ବାଳକୁ ଜଡ଼ା ତେଲ । ଥରେ ଅଠା ଧରିଲେ ଆଉ ଛାଡ଼ିବନି ।
ତମର ଆମେ ଯେମିତି ସାହା ଭରସା, ଆମର ବି ତମେ ସେମିତି ।

ଇନ୍ସପେକ୍ଟର: ସାର୍ ! କେଉଁଥି ପାଇଁ ଖବର ଦେଇଥିଲେ, କିଛି କହିଲେନି ?

ଚୌଧୁରୀ : କଥା କ'ଣ କି, ଜଣେ ଦି'ଜଣ ଆଦର୍ଶବାଦୀ ଯୁବକ ଏମ୍.ଏଲ୍.ଏ ପାଇଁ ନୋମିନେଶନ୍ ଫାଇଲ୍ କରିବାକୁ ମନସ୍ଥ କରିଛନ୍ତି । ବୁଝିଲେ ଇନ୍ସପେକ୍ଟର ବାବୁ ! ମୁଁ ଟିକିଏ ଆଗୁଆ ଜାଣିବାକୁ ଚାହେଁ, ସେମାନଙ୍କର ବାଓଡ଼ାଟା ଠାରୁ ଆରମ୍ଭ କରି ପାର୍ଟି ଡାଟା ପର୍ଯ୍ୟନ୍ତ ।

ଇନ୍ସପେକ୍ଟର: ଆପଣ ସାର୍ ! ଆଦୌ ବ୍ୟସ୍ତ ହୁଅନ୍ତୁନି । ଆମର ଯାହା ଆରେଞ୍ଜମେଣ୍ଟ ଆପଣ ସବୁ ଡାଟା ପାଇଯିବେ ।

ଚୌଧୁରୀ : Then its an excellent arrangement.

ଇନ୍ସପେକ୍ଟର: Yes Sir ! ମୁଁ ଆସୁଛି ।

ଚୌଧୁରୀ : ଥ୍ୟାଙ୍କ୍ ୟୁ ।

ଅନ୍ଧାର

# ନବମ ଆଲୋକ

*(ପାଣ୍ଣୁ ମାଷ୍ଟ୍ରେଙ୍କ ଘର – ମିନୁ ମୃତ ପାଣ୍ଣୁ ମାଷ୍ଟ୍ରଙ୍କ ତୈଳଚିତ୍ର ସାମ୍ନାରେ ଠିଆ ହୋଇ ଫଟୋକୁ ଚାହିଁଛି – ଆଲୋକ ଆସିଛି)*

ମିନୁ : ଦାଦା !
ତମେ ଆମ ପାଇଁ କ'ଣ ନ କରିଛ । ବାପା ମା ଆମକୁ ଛାଡ଼ି,
ହଇଜାରେ ଆର ପାରିକୁ ଚାଲିଗଲେ । ଆମ ଦି' ଜଣଙ୍କୁ
କେମିତି ମଣିଷ କରିବ, ସେଇ ନିଶାରେ
ତମେ ଘର ସଂସାର ବି କଲନି । ଛୁଆ ବେଳେ ଆମର
ଅଳି ଅଝଟ ସବୁ ସହିଚ । ତମ ସ୍ନେହ ଆଦରରେ
ଆମେ ବାପା ମା'ଙ୍କୁ ହରାଇବାର ଦୁଃଖ ଭୁଲିଗଲୁ ।
ସତରେ ଦାଦା !
ତମେ ଆମ ପାଇଁ କ'ଣ ନ କରିଛ । ରାତିରେ ଆକାଶ ଭର୍ତ୍ତୀ ତାରାକୁ
ଦେଖେଇ ସପ୍ତର୍ଷୀ ମଣ୍ଡଳକୁ ଗୋଟି ଗୋଟି କରି ଚିହ୍ନେଇଚ ।
ମିଶାଣ ଫେଡ଼ାଣ ଗାଣିତିକ ସୂତ୍ରରେ ସେଇଦିନୁ
ଏମିତି ବାନ୍ଧି ଦେଲ ଯେ, ଆଜି ତମେ ଥିଲେ ଦେଖିଥାଆନ୍ତ,
ତମ ମିନୁ ଗଣିତରେ ଅଧ୍ୟାପିକା ହେଇଚି – ଅଧ୍ୟାପିକା ।
ହେଲେ ତମେ ! ଏ ଖୁସି ଦେଖିବାକୁ ଆଜି ନାହଁ । ସତେ ଯେପରି ଏତେ ଖୁସି ଏତେ ଆନନ୍ଦ ଭିତରେ
ମୋର ସବୁ ସାର୍ଥକତା ସବୁ ସ୍ୱପ୍ନ ଆଜି ଭାଙ୍ଗି ଚୁରମାର ହେଇଯାଉଚି ।
ତୁମ ଫଟରେ ସୁନ୍ଦର ବଉଳ ଫୁଲର ମାଳ ଯେତେ ସତେଜ ଦେଖା ଗଲେ ବି
ଧୂପ ଦୀପ ଚନ୍ଦନରେ ତୁମ ଫଟକୁ ଯେତେ ସଜେଇଲେ ବି
ତମ ପାଟିରୁ ଗେହ୍ଲବସରର ମିନୁ ଡାକ ଆଉ ଶୁଭୁନି । ନା...
(କାନ୍ଦ)

ସତ୍ୟ : (କିଛି ସମୟ ମିନୁର ଦୁଃଖ ଶୁଣି ଅନ୍ୟମନସ୍କ କରିବା ଛଳରେ) ମିନୁ !

ମିନୁ : କ'ଣ ?

ସତ୍ୟ : ପାର୍ଟି ଅଫିସରୁ ଆଜି ଲୋକ ଆସିବେ । ଆଜି ମିଟିଂ ହବ ।

ମିନୁ ମୁଁ କ'ଣ କରିବି ? ମୋର କ'ଣ ଅଛି ?

ସତ୍ୟ : ତୁ ଏମିତି ନ ଖାଇ ନ ପିଇ ଫଟକୁ ଅନେଇ ବସିରହିଲେ
ଦାଦା କ'ଣ ଆଉ ଫେରି ଆସିବେ ।
ମୁଁ ତ ପୁଣି ମୋ ମନକୁ ବୁଝେଇ ଦେଇଚି ନା ନାହିଁ ?

ମିନୁ : ମୁଁ କିନ୍ତୁ ଦାଦାଙ୍କୁ ଭୁଲି ପାରୁନି ସତ୍ୟଭାଇ !
ଜମା ପାରୁନି । ନା... ମୁଁ ପାରୁନି ।

ସତ୍ୟ : ଦାଦାଙ୍କର ବଡ଼ ଇଚ୍ଛା ଥିଲା, ତୁ ଗଣିତରେ ଅଧ୍ୟାପିକା ହବାକୁ ।
ତାଙ୍କର ଆଶା ପୁରଣ ହେଇଚି । ତାଙ୍କର ସ୍ୱପ୍ନ ତୁ ସାକାର କରିଛୁ ।
ଦାଦା ସେ ପୁରରେ ଥିଲେ ବି ତୋ ପାଇଁ ସେ ସବୁବେଳେ
ଶୁଭ ମନାସୁ ଥିବେ । ତୁ ତାଙ୍କୁ ଭୁଲି ଯିବାକୁ ତ ମୁଁ କହୁନି । ଅନ୍ତତଃ...

ମିନୁ : ଗାଁ ଛାଡ଼ି ଯାଇ ମୁଁ ଦୂରରେ ରହିବି । ତୁ ସତ୍ୟଭାଇ
ଏକଲା ହେଇଯିବୁ ନା । ଗୋଟେ ଛୋଟ କଥା କହିବି, ରଖିବୁ ?

ସତ୍ୟ : କ'ଣ କହୁନୁ । ନିଶ୍ଚୟ ରଖିବି ।

ମିନୁ ପାର୍ଟି ମିଟିଂକୁ ତୁ ଯାଆନା ।
ସୁଯୋଗ ଉଣ୍ଡି ସେ ଚୌଧୁରୀ ପୁଣି କିଛି ବଦମାସୀ ହୁଏତ କରିପାରେ ।
ମତେ ଭୟ ଲାଗୁଚି । ସତ୍ୟ ଭାଇ !

(ଲାଲୁ କବାଟ ବାଡ଼େଇଛି)

ସତ୍ୟ : ମିନୁ ତୁ ଭିତରକୁ ଯା, ମୁଁ ଦେଖେ କିଏ ଡାକୁଚି ? (ମିନୁ ଭିତରକୁ ଯାଇଛି)
ଆସନ୍ତୁ, ଭିତରକୁ ଆସନ୍ତୁ ।

ଲାଲୁ : (ଭିତରୁ) ସତ୍ୟ ବାବୁ ଘରେ ଅଛନ୍ତି ? (ପ୍ରବେଶ)
ନମସ୍କାର ।

ସତ୍ୟ    ଆପଣ କିଏ ? କ'ଣ କାମ ଅଛି ?

ଲାଲୁ    କ'ଣ ଚିହ୍ନି ପାରୁନାହାନ୍ତି । ମୁଁ ଲାଲୁ ମଙ୍ଗରାଜ ।
ମୁଁ ଚୌଧୁରୀ ମଣି ମିଶ୍ରଙ୍କ ଖାସ୍ ଲୋକ । ଚୌଧୁରୀଙ୍କର ଗୋଟେ ଖବର, ଆପଣଙ୍କୁ କହିବାର ଅଛି । ସେଇଥିପାଇଁ...

ସତ୍ୟ    ଚୌଧୁରୀଙ୍କର ଖବର ? ମୋ ପାଖରେ ତାଙ୍କର କି କାମ ?

ଲାଲୁ    :    ହଁ, ଜରୁରୀ ।

ସତ୍ୟ    ଜରୁରୀ ମାନେ ? ମୋ ପାଖରେ ...

ଲାଲୁ    :    ବଡ଼ ଗୁପ୍ତ ବି !

ସତ୍ୟ    :    ଜରୁରୀ ପୁଣି ଗୁପ୍ତ, ମୋ ପାଖରେ ...

ଲାଲୁ    :    ଭୟ କରୁଛନ୍ତି ? ମୋ ସାଙ୍ଗରେ ଆପଣଙ୍କୁ ଯିବାକୁ ହେବ ।

ସତ୍ୟ    ନା – ନା, ଭୟ କରିବି କାହିଁକି ? ହେଲେ ମୁଁ ଯିବି କାହିଁକି ?

ଲାଲୁ    :    ମୁଁ ନିଜେ ନେଇଯିବି, ନିଜେ ଛାଡ଼ି ଦେଇଯିବି ।

ସତ୍ୟ    :    ହେଲେ, ମୁଁ ଯିବି କାହିଁକି ?

ଲାଲୁ    କହିଲି ପରା ଜରୁରୀ ଅଛି ।
ଆସନ୍ତୁ ! ଆସନ୍ତୁ ! (ଛୁରୀରେ ହାତ ମାରି)

ସତ୍ୟ    :    ଠିକ୍ ଅଛି ଚାଲନ୍ତୁ । ମୁଁ ଆସୁଛି ମିନୁ ! (ଉଭୟେ ପ୍ରସ୍ଥାନ)
(ମିନୁ ଘରୁ ଆସି ସନ୍ଦେହ ଆଖିରେ ଏକ ଲୟରେ ସତ୍ୟର ଯିବା ପଥକୁ ଚାହିଁଛି ପରେ ଆଲୋକ ଲିଭିଛି)

ଅନ୍ଧାର

# ଦଶମ ଆଲୋକ

*(ଚୌଧୁରୀ ମଣି ମିଶ୍ରଙ୍କ ଡ୍ରଇଂ ରୁମ୍ - ଲାଲୁ ଓ ସତ୍ୟ ପହଞ୍ଚି ଯାଇଛନ୍ତି - ସତ୍ୟକୁ ଦେଖି)*

ଚୌଧୁରୀ : ଆରେ ସତ୍ୟ ବାବୁ ଯେ, ଆସ ଆସ ।

ସତ୍ୟ ମୋତେ ଆପଣ ଡକେଇଥିଲେ ?

ଚୌଧୁରୀ : ହଁ, ବସ, ଥଣ୍ଡା ପିଇବ ନା ଗରମ । ଆରେ ବସ । ଶୁଣୁଚି, ତମେ ଇଲେକସନ୍‌ରେ ମୋ ସହ କଣ୍ଟେଷ୍ଟ କରିବାକୁ ଚାହଁ ?

ସତ୍ୟ : ମୁଁ ଯଦି ଠିଆ ହୁଏ, ଏଥିରେ ଆପଣଙ୍କର ଅସୁବିଧା କ'ଣ ହେବ । ପ୍ରତିଦ୍ୱନ୍ଦିତାରେ ଜଣେ ଜିତିଲେ ଆଉ ଜଣେ ହାରିବ ।

ଚୌଧୁରୀ : ତା' ତ ସତ । ହେଲେ ଟିକିଏ ଅସୁବିଧା ରହିଚି । ଶୁଣ ! ତୁମେ ପିଲାଲୋକ । ଏ ରାଜନୀତିର ଝମେଲା ଭିତରେ ତମର ପଶିବା ଆଦୌ ଉଚିତ୍ ହବନି । ଆଗକୁ ତମର ଅନେକ କାମ । ଧର, ତମ ଭଉଣୀ ବାହାଘର । ସେଥିରେ ପୁଣି ତୁମର ଫିକ୍ସଡ୍ ଇନ୍‌କମ୍ ମଧ୍ୟ ।

ସତ୍ୟ : ଯାହାକିଛି ଅଛି, ଆମେ ତ ଚଳି ଯାଉଚୁ । ତା'ଛଡ଼ା ଭଉଣୀ ମୋର ଜଣେ ଅଧ୍ୟାପିକା । ଚାକିରି ବି କରିଛି ।

ଚୌଧୁରୀ : (ହସ) ତାର ଇନକମ୍ କେତେ ? କେତେବର୍ଷ ସିଏ ଚାକିରି କଲାପରେ ବିବାହ କରିବ ? ବୁଢ଼ୀ ହେଇଯିବ । ଟଙ୍କା ରଖି ବାହା ହେଲା ବେଳକୁ ତା'ର ଆଉ ବଅସ ନ ଥିବ ।

ସତ୍ୟ : (ନୀରବ)

ଚୌଧୁରୀ : ଆଉ ତମ କଥା,
ତମର କ'ଣ ସଂସାର କରିବାକୁ ଇଚ୍ଛା ନାହିଁ ।
ଚିରକୁମାର ହେଇ ଏମିତି କଟେଇ ଦବ ।
କେତେଦିନ ଏମିତି ଟାଣଟୁଣ୍ ହେବ ଚଳିବ ।
ସମୟ କାହାରିକୁ ଅପେକ୍ଷା କରେନା ।
ସମୟକୁ ଦେଖି ସୁବିଧା ସୁଯୋଗ ହାସଲ କରିବାକୁ ହବ ।

ସତ୍ୟ : ତେବେ ଆପଣ, କ'ଣ କହିବାକୁ ଚାହାନ୍ତି ?

ଚୌଧୁରୀ : ଦି'ଟା କଥା । ମୁଁ ତମକୁ ପ୍ରଚୁର ଅର୍ଥ ଦେବି ।
ତମ ଭଉଣୀ ବାହାଘର, ତମ ବିଜିନେସ୍ – ସବୁକିଛି ଠିକ୍ ଠିକ୍ ଚାଲିବ ।
କିନ୍ତୁ, ତା ବଦଳରେ ଗୋଟାଏ କଥା –
ତମେ ଯେମିତି ନୋମିନେଶନ୍ ଫାଇଲ ନ କର ।

ସତ୍ୟ : ସାର୍ ! ତେବେ ମୋତେ ଟିକେ ଚିନ୍ତା କରିବାକୁ ସମୟ ଦିଅନ୍ତୁ ।

ଚୌଧୁରୀ : (ହସି) ଏଇ ହଉଚି ବୁଦ୍ଧିମାନର କାର୍ଯ୍ୟ ।
ବୁଦ୍ଧିମାନ ଲୋକ,
ସମୟ ସୁବିଧା ଓ ସୁଯୋଗ କେବେ ହାତଛଡ଼ା କରେନା ।
ଥରେ ହାତଛଡ଼ା ହେଇଗଲେ ସୁଯୋଗ ଆଉ ମିଳିବନି (ହସ) ।

ସତ୍ୟ : (ନୀରବ)

ଲାଲୁ : ଲାଲୁ ! ଲାଲୁ !
ଆଟାଚି ସହ ସତ୍ୟ ବାବୁଙ୍କୁ ନିରାପଦରେ ଘରେ ଛାଡ଼ି ଦେଇ ଆସ୍ ।

ଅନ୍ଧାର

# ଏକାଦଶ ଆଲୋକ

*(ପାଣ୍ଡୁ ମାଷ୍ଟ୍ରେଙ୍କ ପୂର୍ବ ବର୍ଣ୍ଣିତ କକ୍ଷ)*

ମିନୁ	ଚୌଧୁରୀ ତତେ କାହିଁକି ଡାକିଥିଲା ସତ୍ୟ ଭାଇ ?
ତୁ ସତ କହ, ମତେ କାହିଁକି ଭୟ ଲାଗୁଚି ।

ସତ୍ୟ	ଭୟ କରିବାର କିଛି ନାହିଁ । ଆମର ତ ପୁଣି ଲୋକବଳ ଅଛି ।
ତା' ଛଡ଼ା ତୁ ଯଦି ରାଜି ନୁହଁ, ବିପ୍ଳବକୁ ମୁଁ ସଫା ସଫା ମନା କରିଦେବି ।
ସେମାନେ ପାର୍ଟି ମିଟିଂ ଏଠି କରିବେନି । ହେଲା ଏବେ ।

ମିନୁ	ହଁ ହେଲା । ତୁ କହୁଚୁ ଭୟ ନାହିଁ ।
ଏଠି ନ୍ୟାୟ ଅନ୍ୟାୟ ବିଚାର ଅଛି ? କହିଲୁ, କେତେଦିନ ହବ ଦାଦା ଆମଠୁ ଗଲେଣି ।
କୋଉ ଅପରାଧୀ ଧରା ପଡ଼ିଲେଣି ? ପୋଲିସ୍ ପାଖରେ କେତେ ଜଣ ସାକ୍ଷୀ ଦବାକୁ ଆଗଭେ ଆସିଲେଣି ?
ଆମ ପକ୍ଷରେ ଲୋକ ବଳ ଅଛି କହିବା ବୋକାମୀ ।
(ମିନୁ ଅଢୁଆଳରେ ବିପ୍ଳବ ପ୍ରବେଶ କରିଛି)
ତୁ ଭୁଲି ଯାଉଚୁ ଯେ
ଚୌଧୁରୀ ବିପକ୍ଷରେ ଆମେ ଠିଆ ହବା ଆମ ତାକତ୍‌ର ବାହାରେ ।

ବିପ୍ଳବ	:	ଖୁବ୍ ଭାବପ୍ରବଣ ହେଇ ପଡ଼ିଛ ମିନୁ !

ମିନୁ	:	(ବିପ୍ଳବକୁ ଦେଖି) ନା ବିପ୍ଳବ ବାବୁ ! ଆପଣ ଆଦର୍ଶବାଦକୁ ଜାବୋଡ଼ି ଧରି ମୋ ପରିବାରରେ ଆଉ ଅଘଟଣକୁ ପ୍ରଶୟ ଦିଅନ୍ତୁନି, Please

ବିପ୍ଳବ	:	I hate this cowardice.

ମିନୁ	:	ବିପ୍ଳବ ବାବୁ !
ଥରେ ଚିନ୍ତାକଲେ, ଦାଦାଙ୍କ ଶବର ଯୋଉ ବିଭତ୍ସ ଦୃଶ୍ୟ ।

ଆଜିବି ସେ ରୂପଟା ମୋ ଆଖିରେ ନାଚି ଯାଉଚି ।
ଆମର କେହି ନାହାନ୍ତି । ଯଦି ସତ୍ୟ ଭାଇର କିଛି ହେଇଯାଏ
ସତ କହୁଛି ମୁଁ ଆଦୌ ସହି ପାରିବିନି ।

ବିପ୍ଳବ (ହସିହସି) ଦେଖୁଚି ମିନୁ ! ମୃତ୍ୟୁକୁ ତମର ଭାରି ଭୟ ।
ସମସ୍ତଙ୍କୁ ଯେ ଦିନେ ମରିବାକୁ ହବ ।
ବ୍ୟକ୍ତିର ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ଏ ଦେଶର ଅବସ୍ଥା ଆଜି ଏଇଆ, ସମୁହ
ଚିନ୍ତା କରିବାକୁ କେହି ନାହିଁ ।

ମିନୁ : ନା, ନା – ମୁଁ ଏସବୁ କିଛି ଶୁଣିବାକୁ ଚାହେଁନା । ସତ୍ୟଭାଇ !
ତୁ ବିପ୍ଳବ ବାବୁଙ୍କୁ ବୁଝେଇ ଦେ ।

ସତ୍ୟ : ତୁ ଭିତରକୁ ଯା, ମୁଁ ବୁଝେଇ ଦଉଛି । (ମିନୁର ପ୍ରସ୍ଥାନ)

ଦେଖ୍ ବିପ୍ଳବ ତୁ...

ବିପ୍ଳବ : ତୁ ସତ୍ୟ ! ମତେ ବୁଝେଇ ପାରିବୁନି । ତୋର ମନେ ଅଛି ନା ?
ହାଇସ୍କୁଲରେ ପଢ଼ିଲା ବେଳେ ମୁଁ ଯୋଉ କବିତା ପାଇଁ
ପୁରସ୍କାର ପାଇଥିଲି ।

ସତ୍ୟ : ନା – ମୋର ମନେ ନାଇଁ ।

ବିପ୍ଳବ 'ମଣିଷ ମରିବ ଦିନେ ।
ଜନ୍ମ ହେଇ ଦେବତା ବି ମରେ ।
ସାର୍ଥକ ଜନ୍ମ ତାର,
ଯାହା ପାଇଁ ଗୋଡ଼ି ମାଟି ଝୁରେ' ।
ନା – ମିନୁକୁ ଦୋଷ ଦେଇ କିଛି ଲାଭ ନାହିଁ ।
ସ୍ୱାଧୀନତା ପରେ ଲୋକ ଚରିତ୍ର ବଦଳି ଯାଇଚି ।

ସତ୍ୟ : ବିପ୍ଳବ ! ସ୍ୱାଧୀନତା ପୂର୍ବରୁ ଲୋକଙ୍କ ଚରିତ୍ର ଏପରି ନ ଥିଲା ବୋଲି
ଭାବୁଚୁ ?

ବିପ୍ଳବ କିଏ ମନା କରୁଚି । ସେଇ ପରାଧୀନତାର ରକ୍ତ
ଆମ ଶୀରା ପ୍ରଶୀରାରେ ପ୍ରବାହିତ ହୋଇ ବିଷାକ୍ତ କରି ଦେଇଚି ।
ସେଦିନ ସାର୍ ତାଙ୍କ ଭାଷଣରେ କହିଥିଲେ ।

ପାଣ୍ଡୁମାଷ୍ଟ୍ରେ : (Background voice)
"ହେ ବିପନ୍ନ ସୂର୍ଯ୍ୟ ! ତମେ ଆଉ ଏ ଦେଶକୁ ଆଲୋକିତ କରନାହିଁ ।
Light has already gone out. ତମର ତେଜହୀନ କିରଣରେ ଅସଂଖ୍ୟ
ପକ୍ଷାଘାତର ଜୀବାଣୁ ବୁଣି ଦିଅନି, ସୂର୍ଯ୍ୟ !
ଯେ ପର୍ଯ୍ୟନ୍ତ ଆମେ ସ୍ୱାଧୀନତାର ମୂଲ୍ୟ ନିଜଭିତରେ ଅନୁଭବ ନ କରିଛୁ,
ଯେ ପର୍ଯ୍ୟନ୍ତ ସତ୍ୟ ନ୍ୟାୟ ଆଦର୍ଶର ପ୍ରତିଷ୍ଠା ପାଇଁ ବିପ୍ଳବ କରିବାରେ
ନିଜକୁ ପ୍ରସ୍ତୁତ ନ କରିଛୁ,
ସେ ପର୍ଯ୍ୟନ୍ତ ତମେ ଆସନି, ସୂର୍ଯ୍ୟ ! ତମେ ଆସନି, ତମେ ଆସନି ।"

ସତ୍ୟ ହଁ ...
ଦାଦାଙ୍କର ଏଇ ବୌଦ୍ଧିକ ଚିନ୍ତାଧାରା, କେହି ଠିକ୍ ରୂପେ ବୁଝି ପାରିଲେନି ।
କାଇଁ ? କ'ଣ ବଦଳିଚି ? ନିର୍ଲଜ୍ଜ ପରି ଭାଷଣ ଦେଇ ଲୋକଙ୍କୁ ଭୁଆଁ
ବୁଲେଇ ଜାତୀୟ ସଂପତ୍ତିକୁ ପ୍ରତିମୁହୂର୍ତ୍ତରେ ଆମେ ଲୁଟ କରୁଚୁ । ନିସ୍ୱାର୍ଥପର
ଦେଶ ସେବକଟିଏ ମିଳିବା କଷ୍ଟକର,
ତେଣୁ ଏଇ ନୈତିକ ମୂଲ୍ୟବୋଧର କଥା, କିଏ ବୁଝିବ ?

ବିପ୍ଳବ ନ ବୁଝନ୍ତୁ ।
ହେଲେ ସାର୍ ତ ବୁଝିଥିଲେ । ଛାଡ଼ ସେ କଥା ।
ହଁ ଶୁଣ୍ ଜେନା ସାହି ପଡ଼ିଆରେ ମିଟିଂ ହବ ।
ସାର୍‌ଙ୍କୁ ସମୂହ ଶ୍ରଦ୍ଧାଞ୍ଜଳୀ ଅର୍ପଣ ପରେ ଅନ୍ୟାନ୍ୟ କଥା ପଡ଼ିବ ।
ଯାହା ଦେଖାଯାଉଛି, ସାରଙ୍କ ପରେ Sympathy votes ବି ଆମେ
ପାଇବା । ଏ ସୁଯୋଗ ଥରେ ଛାଡ଼ିଦେଲେ ଆଉ ମିଳିବନି ।
ମୁଁ ମିଟିଂ ଗ୍ରାଉଣ୍ଡକୁ ସିଧା ଯାଉଚି । ତୁ କାମ ସାରି ପହଞ୍ଚିବୁ ।
ଏଥର ଜିତାପଟ ଆମର । (ପ୍ରସ୍ଥାନ)

ସତ୍ୟ (ସ୍ୱଗତଃ) ଜିତାପଟ, Sympathy votes. (ହସ)

ଅନ୍ଧାର

# ଦ୍ୱାଦଶ ଆଲୋକ

*(ଚୌଧୁରୀ ମଣି ମିଶ୍ରଙ୍କ ସେଇ ପୂର୍ବର ଡ୍ରଇଂ ରୁମ)*

ଲାଲୁ : ହୁଁ, ଆରେ ଦୁଃଶା ! କାମଟା କ'ଣ ମନକୁ ଏବେ ପାଇଲା ।

ଦୁଃଶା ସତରେ ଲାଲୁ ! ତୋର ତ ଏଇଟା ମୁଣ୍ଡ ନୁହଁରେ, ଗୋଟେ ମେସିନ ।
ତୋ କଥା ଯେମିତି, କାମ ସେମିତି, ବୁଦ୍ଧି ବି ସେମିତି ।

ଲାଲୁ ଆଉ ତୋ ଭଳିଆ କଣ କଥା ହିଟର୍‌, କାମ ରେଫ୍ରିଜେରେଟର ।

ଦୁଃଶା ହେ, ସେମିତି କହିବୁନି କହୁଚି ।

ଲାଲୁ ଚୌଧୁରୀ ସାହେବ କହିବା ମାତ୍ରେ, ବୁଲଡୋଜର ପରି ମାଡ଼ି ଯାଇପାରିବୁ ।
ନିହାତି ଦରକାର ବେଳେ ସାହସ ସହିତ ଆଗକୁ ଡେଇଁ ପଡ଼ିବୁ ?
ନା – ପାରିବୁନି ।
ହଇରେ ତୋର ତ ଛେଳି କଲିଜା ।

ଦୁଃଶା ମତେ ରଗାନା କହୁଚି, ଲାଲୁ !

ଚୌଧୁରୀ : (ପ୍ରବେଶ) କିରେ କ'ଣ ହେଲା ? ପାଟି କାଇଁକି ହଉଚି ?

ଦୁଃଶା ନାଇଁ ଆଜ୍ଞା !
କିଛି ହେଇନି । (ଲାଲୁ ମୁରୁକି ହସିଛି)

ଚୌଧୁରୀ : (ଲାଲୁକୁ) କଣ୍ଟ୍ରାକ୍ଟର ରମେଶ ବାବୁଙ୍କୁ କାଲି ଫୋନ କରିଥିଲି ।
ସେ ରାଜି ହୋଇଛନ୍ତି, ତୋ ଛାତ ପାଇଁ ଯାହା ରଡ୍‌, ସିମେଣ୍ଟ
ଯାହା ଦରକାର ସବୁ ଦେବେ ।
ଲାଲୁ ! ତୁ ଟିକେ ତାଙ୍କ ସହ ଯୋଗାଯୋଗ ରଖ ।

ଲାଲୁ ଆଜ୍ଞା !

ଦୁଃଶା   ସାର୍, ଆଉ ମୋ କାମଟା ?

ଚୌଧୁରୀ :   ବଡ଼ ପୋଖରୀ ନିଲାମ କଥା କହୁଛୁ ତ ? (ଦୁଃଶା ମୁଣ୍ଡ ଟୁଙ୍ଗାରିଛି) ହଉ ହେଲା – କଥା ଦଉଚି, ତୁ ନବୁ । ଆଗ ଇଲେକ୍‌ସନଟା ସରୁ । ନିଲାମ ବେଳେ କଲେକ୍ଟର, ବି.ଡି.ଓ.ଙ୍କୁ କହିଦେବି । ହୋଇଯିବ ।

ଲାଲୁ   ଗଲା ସଂନ ଗଣ୍ଡଗୋଳରୁ ବଡ଼ ପୋଖରୀ ନିଲାମ ହେଇନି ।
ମାଛ ଗୁଡ଼ା ବଢ଼ି ବଢ଼ି ଏଡ଼େ ଏଡ଼େ ହେଲେଣି ।
(ଦୁଃଶାକୁ ଚିଡ଼େଇବାକୁ ଯାଇ ମାଛର ଆକାର ଧିରେ ଧିରେ ବଢ଼ିଛି)
ଦୁଃଶାର ବେଶ୍ ଭଲ ରୋଜଗାରଟାଏ ହୁଅନ୍ତା ।

ଦୁଃଶା   ସାର୍ ଦେଖିଲେ ଲାଲୁକୁ ...

ଚୌଧୁରୀ :   ମିଟିଂରେ କ'ଣ ଦେଖିଲୁ ?

ଲାଲୁ   ସେଠି ଯେତେ ଲୋକ ଥିଲେ ସମସ୍ତେ ପାଣୁମାଷ୍ଟ୍ରେଙ୍କ ପାଇଁ ଆଖିରୁ ଲୁହ ଗଡ଼ଉଥିଲେ ।

ଦୁଃଶା   ଆମ ମିଟିଂରେ ଆପଣ ଯେମିତି କାନ୍ଦୁଥିଲେ, ଏଠି କାହିଁକି ସେତିକି କାନ୍ଦୁ ନ ଥିଲେ ।

ଚୌଧୁରୀ :   ଚୁପ୍‌ବେ – ସତ୍ୟ ମିଟିଂକୁ ଆସିଥିଲା ?

ଲାଲୁ   ସତ୍ୟ ... କାଇଁ ନାଇଁତ ଆଜ୍ଞା ! ସିଏ ବା କାହିଁକି ଆସିବ ।

ଚୌଧୁରୀ :   ମୁଁ ଶୁଣୁଛି, ଗୋଟେ ଟୋକା, ନିଆଁ ଭଳିଆ ଭାଷଣ ଦଉଚି । କିଏ କିରେ ସେ ?

ଦୁଃଶା   ଆପଣ ଯେମିତି ନ ଜାଣିଲା ପରି କହୁଛନ୍ତି ।

ଚୌଧୁରୀ :   କାଇଁ ମୋର ସେମିତି ମନେ ପଡୁନି । (ଭାବି)

ଲାଲୁ   ସେ ପରା ପାଣୁମାଷ୍ଟ୍ରଙ୍କ ଛାତ୍ର । ତା ନାଁ ବିପ୍ଳବ ।

ଦୁଃଶା   ଆଜ୍ଞା, ତା ପଛରେ ବହୁତ ଲୋକ ବଳ ।

ଲାଲୁ        ଟୋକାଟା ମହା ଚେଙ୍ଗା

ଦୁଃଶା        ସବୁ ନିଆଁ କରିଦବ ଆଜ୍ଞା !

ଚୌଧୁରୀ :    ଆବେ ହେ ମୁର୍ଖ - ନିଆଁ କ'ଣ କରିଦବ ?

ଲାଲୁ        ତା' ନାଁ ଟା ବିପ୍ଳବ ତ, ସେଇଥି ପାଇଁ ଦୁଃଶା କହୁଚି ନିଆଁ କରିଦବ ।

ଦୁଃଶା        ହଁ ଆଜ୍ଞା, ସେଇଆ ।

ଚୌଧୁରୀ :    (ହସ) ବିପ୍ଳବ - ପାଣୁମାଷ୍ଟ୍ରଙ୍କ ଛାତ୍ର ବିପ୍ଳବ-
ଏଥର ତିନିରେ ପଡ଼ିଲା ।

(ସମସ୍ତେ ହସି ଉଠିଲେ)

ଅନ୍ଧାର

# ତ୍ରୟୋଦଶ ଆଲୋକ

*(ପାଣୁମାଷ୍ଟ୍ରେଙ୍କ ଘର – ସତ୍ୟ ଗମ୍ଭୀର ହୋଇ ଚିନ୍ତା କରୁଛି – ବିପ୍ଳବ, ସତ୍ୟ ଠାରୁ କଥା ଆଦାୟ କରିବାକୁ ଚେଷ୍ଟା କରୁଚି)*

ବିପ୍ଳବ ହେଲେ ତୁ ମିଟିଂ କାହିଁକି ଗଲୁନି ? ତୁ ଯେତେ ଯାହା କହିଲେ ବି,
ମୁଁ କିନ୍ତୁ ତୋ ସହ ଏକମତ ନୁହେଁ ।
ଏତେ ଶୀଘ୍ର ତୋର ସ୍ୱର ବଦଳିଯିବ,
ନା – ଏକଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ପାରୁନି –

ସତ୍ୟ ଦେଖ୍ ବିପ୍ଳବ !

ବିପ୍ଳବ ନା,
ମୁଁ ତୋ କଥା ଆଦୌ ବିଶ୍ୱାସ କରୁନି । ମୁଁ ଜାଣେ ତୁ ମୋ ସଙ୍ଗେ ଥଟ୍ଟା କରୁଚୁ ।

ସତ୍ୟ ଥଟ୍ଟା କରିବାର ବେଳ ଇଏ ନୁହେଁ, ବିପ୍ଳବ !

ବିପ୍ଳବ ପାର୍ଟି ଅଫିସରୁ କାଲି ଟେଲିଗ୍ରାମ ଆସିଚି ।
ତୋର ନୋମିନେଶନ ପାଇଁ ସବୁ ଫାଇନାଲ ହେଇଚି ।

ସତ୍ୟ ତୁ ଟିକିଏ ବୁଝିବାକୁ ଚେଷ୍ଟା କର ।
ପୁତୁରା ଆଉ ଛାତ୍ର ଭିତରେ କିଛି ପାର୍ଥକ୍ୟ ନାହିଁ । ତୁ' ତ ଦାଦାଙ୍କର ସବୁଠୁଁ ପ୍ରିୟ ଛାତ୍ର ।
ବରଂ ତୁ ଷ୍ଟାଣ୍ଡ କର –

ବିପ୍ଳବ ଠିକ୍ ଅଛି – ଚୌଧୁରୀ ମଣି ମିଶ୍ରକୁ ମୁଁ କଣ୍ଟେଷ୍ଟ କରିବି ।
ତୋ ଭଳି ମୁଁ Coward ନୁହେଁ – I am really sorry.
ସାର୍‌ଙ୍କର ରକ୍ତ ପରା ତୋ ଦେହରେ ପ୍ରବାହିତ ହେଉଚି ?

ସତ୍ୟ  କ'ଣ ହେଇଗଲା ? ମୋର ତ ପୁଣି ଅସୁବିଧା ଅଛି ।

ବିପ୍ଳବ  ହଁ, ଯୁଆଡ଼େ ବର୍ଷା, ସିଆଡ଼େ ଛତା – ଅଧିକାଂଶ ଲୋକ ଆଜି ଏହି ପଥର ଯାତ୍ରୀ । ତୁ କାହିଁକି ବା ବାଦ୍ ପଡ଼ିବୁ ।
ତୋର ବା ଉପାୟ କ'ଣ ଅଛି ?

ସତ୍ୟ  Don't say nonsense.

ବିପ୍ଳବ  ତୁ କହିବାକୁ ବାଧ କରୁଛୁ, ତୁ ଭୁଲିଯାଉଛୁ,
ସାର କହୁଥିଲେ ଯିଏ ଦେଶର ଡାକ ଶୁଣି ପାରେନାହିଁ, ସିଏ ମା'ର ଡାକ ଶୁଣିପାରେ ନାହିଁ ।

ସତ୍ୟ  ପ୍ଲିଜ୍ ବିପ୍ଳବ ! Try to understand. ତୁ ମତେ ଭୁଲ୍ ବୁଝୁଛୁ ।
ମିନୁ କଥା ତ' ତୁ ଜାଣିଛୁ ।

ବିପ୍ଳବ  : ଏ ଦେଶର ନେତା, ବଳିଦାନ ଉତ୍ସର୍ଗର ଭାଷଣ ଦିଏ –
କିନ୍ତୁ ନିଜର ସ୍ୱାର୍ଥ ପାଇଁ ବିଳାସବ୍ୟସନରେ ମାତେ, ନୈତିକ ମୂଲ୍ୟବୋଧ, ଅଙ୍ଗୀକାରର, କଥା କୁହେ,
କିନ୍ତୁ ଚୋର ବଦମାସ୍ ମୁନାଫାଖୋରଙ୍କ ସହ ମିଶେ ।
ଶାନ୍ତି ସମତା ରକ୍ଷା ପାଇଁ ଲମ୍ବା ଚଉଡ଼ା ଭାଷଣ ବି ଦିଏ ।
କିନ୍ତୁ ଜାତି ଜାତି ଭିତରେ ବିଭେଦର ପଥର ପାଚେରୀ ଠିଆ କରେ ।
ତୁ ସତ କହିଲୁ ସତ୍ୟ ! ତୋର ଏ ପରିବର୍ତ୍ତନ ପାଇଁ ସେମିତି କିଛି ବିଶେଷତ୍ୱ ନାହିଁ ତ ? ମୋର ସନ୍ଦେହ ହଉଛି–
ମୁଁ ଭାବୁଛି, ମିନୁ ନାଁରେ ତୁ ଖସି ଯିବାକୁ ଚାହୁଁଛୁ ?

ସତ୍ୟ  ନା,
ମୋତେ ବିଶ୍ୱାସ କର । ୟୁନିଭର୍ସିଟିରୁ ଡିଗ୍ରୀ ପାଇ
ମନମୁତାବକ ଚାକିରି ଖଣ୍ଡେ ନ ପାଇ
ଶେଷରେ ଦାଦାଙ୍କ ଏଲ.ଆଇ.ସି. ପଇସା ଯାହା ମିଳିଥିଲା, ସେଥିରେ ବିଜିନେସ୍ କରୁଛି – ସତ କହିବାକୁ ଗଲେ,

ମୁଁ ମନା କରିବାର କିଛି ସେମିତି ବଡ଼ କାରଣ ନାହିଁ ।
ଆଗକୁ ମିନୁର ବାହାଘର ।
ମୋର ତ ଅନେକ ଦାୟିତ୍ୱ – ମତେ ତୁ ଝାମେଲାରେ ପୁରାନା ।
ପ୍ଲିଜ୍ ତୁ ଷ୍ଟାଣ୍ଡ କର ମୁଁ ତୋ ପଛରେ ଅଛି ।
(ମିନୁ ଟ୍ରେ ରେ ଚା ଧରି ଆସିଛି । ସତ୍ୟର ମନା କରିବାକୁ ଲକ୍ଷ୍ୟ କରିଛି
– ବିପ୍ଳବ ମଧ୍ୟ ମିନୁଙ୍କୁ ଅନେଇଛି)

ବିପ୍ଳବ All right ମୁଁ ଆସୁଛି ।

ଅନ୍ଧାର

# ଚତୁର୍ଦ୍ଦଶ ଆଲୋକ

*(ପାଣ୍ଡୁମାଷ୍ଟ୍ରେଙ୍କ କକ୍ଷ – ବିପ୍ଳବ ଖଟ ଉପରେ ଶୋଇଛି – କଣ୍ଠ ସ୍ୱର ଆଗରୁ ରେକର୍ଡ଼ ହେବ – ନୀରବରେ ମନେ ମନେ ସ୍ୱପ୍ନ ଦେଖିଚାଲିଛି)*

ବିପ୍ଳବ ‘ଚୌଧୁରୀ ମଣି ମିଶ୍ର ବହୁତ ଚେଷ୍ଟା କରିଚି –
ହେଲେ ସବୁ ଚେଷ୍ଟା ତା’ର ପଣ୍ଡ ହୋଇଯିବ – Oposition ପାର୍ଟିର Leader ମତେ କହିଥିଲେ –
ଚୌଧୁରୀ ମଣି ମିଶ୍ରକୁ ଯିଏ ନିର୍ବାଚନରେ ହରେଇବ ସିଏ ମନ୍ତ୍ରୀ ହେବ
ସୁତରାଂ –
ଆଜି ଯୁବ ଗୋଷ୍ଠୀ ଭିତରେ ଜଣେ ଯୁବ ମନ୍ତ୍ରୀ ହିସାବରେ
ମୁଁ ଶାସନକୁ ଆସିବି –
ମୋ ପାଖରେ ସବୁ କିଛି ରହିବ,
ଅର୍ଥ, କ୍ଷମତା, ବାହୁବଳ, ଇତ୍ୟାଦି ... ଇତ୍ୟାଦି –
ହେଲେ ଯୋଉ ଆଦର୍ଶ ପାଇଁ ବିପ୍ଳବ କରି ଆସିଲି –
ଭାବିଲା ବେଳକୁ – ମତେ କାହିଁକି, କେମିତି କେମିତି କେମିତି ଲାଗୁଛି –
କେତେ ଆଡୁ କେତେ ଲୋକ କେତେ କାମ ନେଇ ମୋ ପାଖକୁ ଆସିବେ
ସତ୍ୟ, ବି ମୋ ପାଖକୁ ଅନେକ କିଛି ଡିମାଣ୍ଡ ନେଇ ଆସିବ – ମିନୁ,
ମଧ୍ୟ ଯଦି ତାର ଟ୍ରାନ୍ସଫର କେସ୍ ନେଇ ମୋ ପାଖକୁ ଆସେ –
(ଆଲୋକର ଲିଭିବା ଓ ଜଳିବା ଭିତରେ ଉଠି ପଡ଼ି ସ୍ୱପ୍ନର ଆବର୍ତ୍ତ ଭିତରେ ପ୍ରବେଶ)

ମିନୁ (ପ୍ରବେଶ) ନମସ୍କାର ସାର୍ ।

ବିପ୍ଳବ : ନମସ୍କାର, (ଦେଖି) ମିନୁ ! ତମେ ?

ମିନୁ : ସେଇ ଟ୍ରାନ୍ସଫର୍ କଥା ନେଇ ଆପଣଙ୍କ ପାଖକୁ ଆସିଥିଲି ସାର୍ !

ବିପ୍ଳବ Don't say Sir. ମୁଁ ତୁମର ସେଇ ବିପ୍ଳବ ବାବୁ !

| | |
|---|---|
| ମିନୁ | ମନ୍ତ୍ରୀଙ୍କୁ ତ ସମ୍ମାନ ଦେବାକୁ ପଡ଼ିବ – ସାର୍ ! ମୋ କଥା ଆପଣ ଭୁଲିଗଲେ ସାର୍ ! |
| ବିପ୍ଳବ | ତମ କଥା ମୁଁ କେବେ ଭୁଲିପାରିବିନି, ମିନୁ ! |
| ମିନୁ | ମୋ ଟ୍ରାନ୍ସଫର ଅର୍ଡ଼ର ଏ ପର୍ଯ୍ୟନ୍ତ ହେଲାନି – |
| ବିପ୍ଳବ | ବ୍ୟସ୍ତ ହୁଅନି । ନିଟକରେ ପାଇଯିବ । ଏଜୁକେଶନ୍ ସେକ୍ରେଟାରୀଙ୍କୁ ଫୋନ୍ କରି କହି ସାରିଚି । ହଁ, ତମେ ଭୁବନେଶ୍ୱର ପୁଣି କେବେ ଆସୁଛ ? |
| ମିନୁ | ଟାନ୍ସଫର ଅର୍ଡ଼ର ତ ହେଲାନି – ଆଉ ଭୁବନେଶ୍ୱର କାହିଁକି ? ଟ୍ରାନ୍ସଫର ଅର୍ଡ଼ରଟା ପାଇଲେ ଯାଇ ରିଲିଭ୍ ହେଇ ଆସିବା କଥା । |
| ବିପ୍ଳବ | (ଫୋନ ରିସିଭର ଧରି) ହେଲୋ ... ହଁ, ନମସ୍କାର ... ରତନପୁର କଲେଜର ଅଧାପିକା ମିସ୍ ମିନାକ୍ଷୀ ପାଟଯୋଶୀଙ୍କ ଟ୍ରାନ୍ସଫର କଥା କହିଥିଲି... ମହାଶୟଙ୍କର ମନେ ଅଛି ତ ... କ'ଣ କହିଲେ ... ହଁ ... ହଁ ... ନା ... ନା ... ମୁଁ ସେସବୁ କିଛି ଶୁଣିବିନି ... ଅର୍ଡ଼ରଟା ଯେମିତି ଟାଇମ୍‌ଲି ଇସ୍ୟୁ ହୁଏ । ଦେଖିବେ । |
| ମିନୁ | Really I am grateful. |
| ବିପ୍ଳବ | ତମ କାମ ଯେ ମୋ କାମ – ଏଥିରେ grateful କହିବାର କ'ଣ ଅଛି – |
| ମିନୁ | ସତ୍ୟ ଭାଇ ଆପଣଙ୍କ ସହ କଥା ହେଇଥିବ ନିଶ୍ଚୟ । |
| ବିପ୍ଳବ | ହଁ ସିଏ ବୋଧେ ଟିକିଏ ଅଭିମାନ କରିଛି – ଥରେ ଦି'ଥର ମୁଁ ମନ୍ତ୍ରୀ ହବା ପରେ ମୋ କ୍ୱାଟର୍ସକୁ ଆସିଥିଲା – କାମ ନେଇ– ଲୋକଙ୍କ ଭିଡ଼, ବ୍ୟସ୍ତତା ଭିତରେ ମୁଁ ତା ସାଙ୍ଗରେ କିଛି କଥାବାର୍ତ୍ତା କରିପାରିନି – |
| ମିନୁ : | ଓଃ, ସେଇଥିପାଇଁ ସତ୍ୟ ଭାଇ, ମୋତେ ଦେଖା କରିବାକୁ କହିଲା – |

ବିପ୍ଳବ    ତମେ ତ ଜାଣ ମିନୁ !
ଇଲେକ୍ସନ୍‌ରେ ସେ ମୋ ପାଇଁ କିଛି ପଇସା ଖର୍ଚ୍ଚ କରିଥିଲା ।
ତାକୁ ବଡ଼ ବଡ଼ ଦି'ଟା କାମ ବି ଦେଇଥିଲି –
ଶୁଣୁଛି – ସେଥିରୁ ସେ ବେଶ୍ ଲାଭ ଉଠେଇଛି – ଆଉ କାମ ପାଇଁ ସେ ଆଗ୍ରହୀ ଥିଲା – କିନ୍ତୁ ସିଏ ତ ବୁଝିବା ଉଚିତ୍ –
ଅନ୍ୟମାନେ ବି ସେ କାମ ପାଇଁ କେତେ ଆଗ୍ରହୀ ଥିଲେ । ତେଣୁ ଆଜିକାଲି ମାର୍କେଟରେ ଜଣକୁ କେତେ ଆଉ ସୁବିଧା ଦିଆଯାଇପାରେ ?

ମିନୁ    ସତ୍ୟଭାଇ ଆପଣଙ୍କୁ ବୋଧହୁଏ ଜାଣିପାରିଲାନି – ମୁଁ ତାକୁ ବୁଝେଇ ଦେବି ମୁଁ ତା'ହେଲେ ଆସୁଚି (ପ୍ରସ୍ଥାନ)
(ଆଲୋକ ଲିଭିବା ଭିତରେ ବିପ୍ଳବ ପୂର୍ବପରି ଖଟରେ ଶୋଇଥିବ – ଉଠିବା ପରେ)

ବିପ୍ଳବ : ଆଦର୍ଶର ଆଲୋକ କେତେଦୂର ଅନ୍ଧକାରକୁ ଭେଦି ପାରିବ – ଏସବୁ ଖାଲି ପାଗଳାମୀ ?

(ବିପ୍ଳବର ହସ ଗତି ବଢ଼ିବା ଭିତରେ ପାଣ୍ଣୁ ମାଷ୍ଟ୍ରେଙ୍କ ପ୍ରବେଶ)

ପାଣ୍ଣୁମାଷ୍ଟ୍ରେ : ବିପ୍ଳବ ତୁ ଏମିତି ହସୁଛୁ ଯେ ?

ବିପ୍ଳବ : ଆଁ ... କିଏ ... କିଏ – (ଭୂତ ଦେଖିବାର ଭୟ)

ପାଣ୍ଣୁମାଷ୍ଟ୍ରେ : ମୁଁ ପରା ପାଣ୍ଣୁ ସାର୍ ...

ବିପ୍ଳବ : ପାଣ୍ଣୁ ସାର୍ !

ପାଣ୍ଣୁମାଷ୍ଟ୍ରେ : କ'ଣ ଚିହ୍ନିପାରୁନୁ – ଆରେ ମୁଁ ପ୍ରାଣକୃଷ୍ଣ ପାଟଯୋଶୀ ।

ବିପ୍ଳବ : ପ୍ରାଣକୃଷ୍ଣ ପାଟଯୋଶୀ !
ସିଏ ତ କୋଉ କାଳୁ ମରି ମାଟିରେ ମିଶିଗଲେଣି – କହୁଚି କ'ଣ ନା ପ୍ରାଣକୃଷ୍ଣ ପାଟଯୋଶୀ –

ପାଣ୍ଡୁମାଷ୍ଟ୍ରେ : ଅଢ଼େଇ ମାସ କାଳ ମୋର ଚେତା ନଥିଲା – ରୋଗରେ ପଡ଼ି ପଡ଼ି ଝଡ଼ି ଯାଇଛି ତ – ସେଇଥିପାଇଁ ମୋତେ ଚିହ୍ନିପାରୁନୁ –

ବିପ୍ଲବ ନା –
ତମେ ପାଣ୍ଡୁମାଷ୍ଟ୍ରଙ୍କ ଭୂତ – You are a ghost !

ପାଣ୍ଡୁମାଷ୍ଟ୍ରେ : ଆରେ ବିପ୍ଲବ ! ମତେ ତୁ ଭୂତ ବୋଲି କହିପାରୁଚୁ ?

ବିପ୍ଲବ ଭୂତ ନୁହେଁ ତ ଆଉ କ'ଣ ? ପାଣ୍ଡୁମାଷ୍ଟ୍ରଙ୍କ ପରି ଜୀବନ୍ତ ମଣିଷ ?

ପାଣ୍ଡୁମାଷ୍ଟ୍ରେ : ହଁ ରେ ଜୀବନ୍ତ ମଣିଷ, ମୋ ନିଜ ଘରେ, ମୁଁ ନିରାପଦରେ ପହଞ୍ଚିଛି –
ତୋ' ସଙ୍ଗେ କଥା ହଉଚି – ତୁ ପୁଣି କହୁଚୁ ଭୂତ –
ମୁଁ ଭୂତ ନୁହଁ – ସତ୍ୟ କାହିଁ ? ମିନୁ କୁଆଡ଼େ ଗଲା ? କାହାନ୍ତି ସେମାନେ ?
ମିନୁ ! ମିନୁ ! ସତ୍ୟ ! ସତ୍ୟ !

ବିପ୍ଲବ (ଗମ୍ଭୀର) ସାର୍ !
ଆପଣ ତେବେ ବଞ୍ଚିଛନ୍ତି – ଆଉ ଯୋଉ ଶବଟା
ଆମେ ସେଦିନ ସତ୍କାର କରିଥିଲୁ –
ଅବଶ୍ୟ ମୁଣ୍ଡଟା ଛେତରା ହୋଇଯାଇଥିଲା – ସେଇଟା ତା ହେଲେ ଆପଣଙ୍କର ନୁହେଁ–

ପାଣ୍ଡୁମାଷ୍ଟ୍ରେ : ନା !
ଚୌଧୁରୀ ମଣି ମିଶ୍ରର ଏହା ଚାଲ୍‌ବାଜୀ ।
ମୋର ଠିକ୍ ମନେ ଅଛି – ସେଦିନ କିଟିକିଟିଆ ଅନ୍ଧାର ରାତି–
ବସ୍‌ଟା ଡେରିରେ ପହଞ୍ଚିଲା –
ରିକ୍ସାରେ ପୋଷ୍ଟର ଗୁଡ଼ା ଲଦା ହୋଇଥିଲା
ହଠାତ୍ ହୋ ହଲ୍ଲା ହେଲା – ରିକ୍ସାବାଲାକୁ ନିସ୍ତୁକ ପିଟିଲେ ସେମାନେ –
କୌଣସି ଉପାୟ ନ ପାଇ ଜୀବନ ବିକଳରେ ମୁଁ ଧାଇଁଲି –
ସେମାନେ ମୋ ପିଛା କରୁଥାଆନ୍ତି –
ଆଗରେ ମଶାଣି ହୁଡ଼ା – ବୁଦ୍‌ବୁଦିକିଆ ଜଙ୍ଗଲ –
ସେମାନେ ମୋ ପଛରେ ଦୌଡୁଥାଆନ୍ତି –

ହଠାତ୍ ଶବଟାଏ ଉପରେ ମୋ ଗୋଡ଼ ପଡ଼ିଗଲା – ହଠାତ୍ ମୁଣ୍ଡକୁ ଯୁଟିଗଲା – ଲୁଗାପଟା ମୋର ଖୋଲିଦେଲି – ଶବଟା ଉପରେ ଫୋପାଡ଼ି ଦେଇ – ଶବ ପିନ୍ଧିଥିବା ଚିରା ପୁରୁଣା ଲୁଗାଟା ମୁଁ ଗୁରେଇ ହୋଇପଡ଼ି ନଇକି ଡେଇଁ ପଡ଼ିଲି, ନଈର ପ୍ରଖର ସୁଅ ।
ସେଇ ସୁଅରେ ମୁଁ ରାତିଯାକ ଭାସିଗଲି ।
ଯାହା ଜଣାପଡୁଛି ଚୌଧୁରୀର ଭଡ଼ାଟିଆ ଗୁଣ୍ଡା ଦଳ ସେଇ ଶବଟିକୁ ମୋରି ଡ୍ରେସ୍‌କୁ ପିନ୍ଧେଇ ମୋ ଶବ ବୋଲି ଚିତ୍ରିତ କରି ଏମିତି ଫିକର କରିଛନ୍ତି –

ବିପ୍ଳବ ଯାହା ହେଲେ ବି ଆପଣ ସମସ୍ତଙ୍କ ପାଖରେ ଆଜି ମୃତ
ପୋଲିସ୍ ରିପୋର୍ଟ ହେଇଚି You are dead -
ତେଣୁ ଲୋକେ ଆପଣଙ୍କୁ accept କରିବେ ତ ?
ଭୂତ... ଭୂତ ବୋଲି କହିବେ –
ଲୋକେ ସେଦିନ ଶବ ସତ୍କାର ନିଜ ଆଖିରେ ଦେଖିଛନ୍ତି –
ଆପଣଙ୍କ ନାଁରେ ଶୋକସଭା – ଫଟୋରେ ଫୁଲମାଳା ପିନ୍ଧେଇବା –
ସବୁ ସରିଛି – କିଛି ବାକି ନାହିଁ – ହେଇ ଦେଖନ୍ତୁ,
ଆପଣଙ୍କ ଫଟୋରେ ଫୁଲମାଳ ।

ପାଣ୍ଡୁମାଷ୍ଟ୍ରେ : କ'ଣ କହୁଛୁ, ବିପ୍ଳବ !

ବିପ୍ଳବ : ଭଲ ହେବ –
ଆପଣ ତୁରନ୍ତ ଏଇ ଅନ୍ଧାର ଭିତରେ ଯେମିତି ଆସିଥିଲେ
ସେମିତି ହଜିଯାଆନ୍ତୁ – ସବୁଦିନ ପାଇଁ ହଜିଯାଆନ୍ତୁ – ନ ହେଲେ ...

ପାଣ୍ଡୁମାଷ୍ଟ୍ରେ : ଦେଖୁଚି – ତୋ ମୁଣ୍ଡ ବୋଧେ ଖରାପ ହୋଇଯାଇଛି – (ଡାକି) ସତ୍ୟ ...
ସତ୍ୟ ... ସତ୍ୟ ... ମିନୁ ... ମିନୁ ...

ସତ୍ୟ : (ଘର ଭିତରୁ ଆସି) କ'ଣ ହେଇଚି ବିପ୍ଳବ ? (ଦାଦାଙ୍କୁ ଦେଖି)
ଦାଦା ! ତମେ ? ? (ଆଶ୍ଚର୍ଯ୍ୟରେ)

ପାଣ୍ଡୁମାଷ୍ଟ୍ରେ : ହଁ, ମୁଁ ।

ସତ୍ୟ ତମେ ... ? କେମିତି ... ?

ପାଣ୍ଡୁମାଷ୍ଟ୍ରେ : ହଁ, ମୁଁ ବିପ୍ଳବକୁ ସବୁକଥା କହିସାରିଚି । ଆରେ ମୁଁ ବଞ୍ଚିଛି ।

ବିପ୍ଳବ ଦେଖ୍ ସତ୍ୟ !
ଚୌଧୁରୀ ମଣି ମିଶ୍ର ଯଦି ଦାଦାଙ୍କ ଆସିବା ଜାଣିପାରେ,
ତେବେ ଭାବିପାରୁଚୁ କ'ଣ ହବ ? ପୁଣି ଥରେ ସେ Attack କରିପାରେ ।
ତୋର ସବୁ ଅସୁବିଧା ହେଇଯିବ - ତୋ ବିଜିନେସ୍ ଯିବ - ତତେ
ଏଲ.ଆଇ.ସି. ଟଙ୍କା ଫେରେଇବାକୁ ହେବ ।

ସତ୍ୟ ଅବଶ୍ୟ । (ସତ୍ୟ ଚିନ୍ତା କରୁଛି)

ବିପ୍ଳବ ଆଗକୁ ମିନୁର ବାହାଘର -
ତୋ' ମୁଣ୍ଡରେ ଅନେକ ବୋଝ -
କାଲି ସକାଳେ ମୁଁ ମନ୍ତ୍ରୀ ହେବି - ତୁ ଯାହା ଚାହିଁବୁ ସବୁ ମୁଁ ଦେବି -
ପୁରୁଣା ପୋକଖିଆ ଆଦର୍ଶକୁ ଜାବୋଡ଼ି ଧରି କିଛି ଲାଭ ହେବନି -
ବୁଢ଼ାକୁ ...

ପାଣ୍ଡୁମାଷ୍ଟ୍ରେ : Don't provoke Satya to kill me
ସତ୍ୟ, ତୁ ପରା ମୋର ରକ୍ତ - ତତେ କୋଳେଇ କାଖେଇ
ଏଇ ହାତରେ ମୁଁ ମଣିଷ କରିଛି - ବିପ୍ଳବ ଯାହା କହୁଚି ତୁ କ'ଣ ତା
କଥାରେ ଏକମତ - କେବେ ନୁହଁ - ତୁ ମତେ କେବେ ମୋ ଘରୁ ମତେ
ତଡ଼ି ଦେବୁନି କି ବିପ୍ଳବ ପରି ନିଜ ସ୍ୱାର୍ଥ ପାଇଁ ମତେ ନିର୍ମମ ଭାବରେ
ମାରି ଦବୁ ନାହିଁ ।

ସତ୍ୟ : ତମେ ତମର କର୍ତ୍ତବ୍ୟ କରିଥିଲ, ଦାଦା ! ମୁଁ ସେମିତି ଅନ୍ୟ କାହାକୁ
ମଣିଷ କରିପାରେ - ଆଉ ସେଥିପାଇଁ କ'ଣ ଦରକାର ଜାଣ -
ଫମ୍ପା ଆଦର୍ଶ ନୁହେଁ । ଟଙ୍କା ... ଟଙ୍କା ...

ପାଣ୍ଡୁମାଷ୍ଟ୍ରେ : ସତ୍ୟ !
କ'ଣ କହୁଛୁ ?
ତୋର ମନେ ଅଛି ନା ? ପ୍ରାର୍ଥନା ଶିଖେଇ ଥିଲି,
ସତ କହିବାକୁ କିଆଁ ଡରିବି
ସତ କହି ପଛେ ମଲେ ମରିବି
ସେଥିପାଇଁ ତୋ ନାଁ ଦେଇଥିଲି ସତ୍ୟ ।

ସତ୍ୟ ନା ... ଦାଦା !

ବିପ୍ଳବ ଦେଖ୍ ସତ୍ୟ !
ସାର୍‌ଙ୍କ ନାଁରେ ହରିଆ ମା'ର ଅପବାଦର କଳଙ୍କ
ଆଜିର ନିର୍ବାଚନ ପରିସ୍ଥିତିରେ ସାରଙ୍କର ଅଚାନକ ଆବିର୍ଭାବ –
ସବୁ ପରିସ୍ଥିତିକୁ ଓଲଟ ପାଲଟ କରିଦେବ – ଭାବି ଦେଖ୍ –
ସୁଯୋଗର ହାତଛଡ଼ା ...

ପାଣ୍ଡୁମାଷ୍ଟ୍ରେ : ବିପ୍ଳବ ! ତୁ ନା, ମୋର ସେଇ ଆଦର୍ଶ –
କୁଆଡ଼େ ଗଲା ତୋର ଆଦର୍ଶ – ତୁ ବୋଧେ କୌଣସି ସ୍ୱାର୍ଥ ନେଇ ଅନ୍ଧ ହୋଇଯାଇଛୁ –
ସେଇଥିପାଇଁ ଆଲୋକର ସ୍ଥିତିକୁ ଉପଲବ୍ଧ କରିପାରୁନୁ –

ସତ୍ୟ ନା– ଦାଦା ! ବିପ୍ଳବ ଠିକ୍ କହୁଛି –
ଆଦର୍ଶ ... ଆଦର୍ଶ ... ଆଦର୍ଶ
ଏ ଦୁନିଆଁରେ ଆଦର୍ଶର ମୂଲ୍ୟ କିଛି ନାହିଁ ।

ପାଣ୍ଡୁମାଷ୍ଟ୍ରେ : ହଁ, ଆଦର୍ଶର ମୂଲ୍ୟ କିଛି ନାହିଁ । ଧିକ୍ ଧିକ୍ ... ମୋର ଜୀବନ,
ହେ ଭଗବାନ – ହେ ପ୍ରଭୁ ମତେ ମାରିଦିଅ –
ମୁଁ ଆଉ ବଞ୍ଚିବାକୁ ଚାହେଁନା ... ନା ...

ମିନୁ : (ପ୍ରବେଶ) ଆଦର୍ଶର ମୂଲ୍ୟ ଅଛି – ମୁଁ ସବୁ ଦେଖି ସାରିଛି, ଶୁଣି ସାରିଛି–

ପାଣ୍ଡୁମାଷ୍ଟ୍ରେ : ନା ... ମା', ସେମାନେ ଯାହା କହିଲେ ସବୁ ଠିକ୍ –
ମୋର ସ୍ଥିତି ଅଛି – ସ୍ଥିତି ବି ନାହିଁ – ମୋ ପାଇଁ ସତ୍ୟର ସମାଧି ହୋଇଚି –
ଗଢ଼ିଥିବା ବିପ୍ଳବ ଆଜି ଭାଙ୍ଗି ଚୁର୍ ମାର୍ ହୋଇଯାଇଛି–
କ'ଣ ପାଇଁ ମୁଁ ଆଉ ଏ ଦୁନିଆଁରେ ବଞ୍ଚି ରହିବି –

ମିନୁ : ଦାଦା ! ଦାଦା !
ତମେ ମତେ ଛାଡ଼ି ଚାଲି ଯାଆନି ଦାଦା । ମତେ ବି ତୁମ ସାଥିରେ ନେଇଯାଅ ।
ମୁଁ ଏଠି ଅଣନିଶ୍ୱାସୀ ହେଇଯାଉଚି ଦାଦା ! (ମିନୁ କାନ୍ଦିଛି)

ବିପ୍ଳବ, ସତ୍ୟ : ମିନୁ !!!
(ସଙ୍ଗୀତ ଭିତରେ ମିନୁର କାନ୍ଦ ବଢ଼ିଛି)

ଅନ୍ଧାର

# ଶେଷ ଆଲୋକ

*(ଆଭାସ ଦୃଶ୍ୟର ଆଲୋକକୁ ପୁଣି ପାଣ୍ଡୁମାଷ୍ଟ୍ରେ ଫେରିଯିବେ– ଦେହରେ ଅସୀମ ବେଦନା ଆଉ ଯନ୍ତ୍ରଣା – ଝିଆରୀ ମିନୁ ଭାରତ ମାତାର ଭୂମିକାରେ ପରିବର୍ତ୍ତିତ ହୋଇଯାଇଛି)*

ପାଣ୍ଡୁମାଷ୍ଟ୍ରେ : ଆଃ ......
ସତ୍ୟ । ନ୍ୟାୟ, ଆଦର୍ଶ, ମାନବିକତା,
ଏ ଶବ୍ଦ ସବୁ ଯନ୍ତ୍ରଣା ଦାୟକ ।
ଯେଉଁ ଶବ୍ଦ ଉଚ୍ଚାରଣରେ ମନରେ
ଆନନ୍ଦର ଢେଉ ଖେଳିଯାଉଥିଲା । କିନ୍ତୁ ଆଜି ସେଇ ଶବ୍ଦର ଉଚ୍ଚାରଣରେ
ମନରେ ବିଷାଦ, ଯନ୍ତ୍ରଣାରେ ଜର୍ଜରିତ ।
ଆଲୋକ ଆଜି ଆହତ । ମୁଁ ଦେଖି ପାରୁଚି ଆଲୋକ ଲିଭି ଲିଭି ଆସୁଚି ।
ଅନ୍ଧକାର ମାଡ଼ି ମାଡ଼ି ଆସୁଚି । ଆଲୋକର ନିତ୍ୟ ମୃତ୍ୟୁ ସୁନିଶ୍ଚିତ ?
ସୁନିଶ୍ଚିତ ।

ମିନୁ : ନା ।
ଆଲୋକ ଆହତ ହୋଇପାରେ । କିନ୍ତୁ
ତା'ର ମୃତ୍ୟୁ ହେଇପାରେନା । ଯୁଗ ପରେ ଯୁଗ,
କେହି ନା କେହି ସେଇ ଆଲୋକ ବର୍ତ୍ତିକାକୁ ଧରି,
ଅନ୍ଧକାର ଭେଦ କରି ଆଗେଇ ଚାଲିଚି ।
ନିରାଶ ଅନ୍ଧକାରରେ ଆଶାର ଜ୍ୟୋତି ହେଇ ପଥ ଦେଖାଇଚି ।
ସେହି କେହି ନା କେହି ଭିତରୁ ମୁଁ କାହିଁ ନୁହେଁ ? କାହିଁକି ନୁହେଁ ?
(ହାତରେ ମଶାଲକୁ ପାଣ୍ଡୁମାଷ୍ଟ୍ରଙ୍କ ଠାରୁ ନେଇ ଟେକି ଧରିଛି –
ଏକ ଦେଶାତ୍ମବୋଧ ସଙ୍ଗୀତରେ ଯବନିକା)





## ଶ୍ରୀ ସରୋଜ ମିଶ୍ର (୧୯୫୫)

ଓଡ଼ିଆ ସାହିତ୍ୟରେ ବେଶ୍ ପରିଚିତ ଏକ ନାମ । ଶ୍ରୀ ମିଶ୍ର ଏକାଧାରାରରେ ଜଣେ ନାଟ୍ୟକାର, କବି, ଗାଳ୍ପିକ ଓ ସମାଲୋଚକ । ବେତାର ଓ ଦୂରଦର୍ଶନରେ ତାଙ୍କର ବହୁ ନାଟକ ପ୍ରସାରିତ। ଶ୍ରୀ ମିଶ୍ର ଶ୍ରେଷ୍ଠ ନାଟ୍ୟକାର ଭାବେ ରାଜ୍ୟ ସଚିବାଳୟ, ଗୋଦାବରୀଶ ସାହିତ୍ୟ ସଂସଦ, ଉତ୍କଳ ଯୁବ ସାଂସ୍କୃତିକ ସଙ୍ଗଠନ, କଟକ ତଥା ଅନ୍ୟାନ୍ୟ ବିଭାଗର ସାଂସ୍କୃତିକ ପରିଷଦ ଦ୍ୱାରା କ୍ରମାଗତ ଭାବେ ସମ୍ମାନିତ ହୋଇ ଆସୁଛନ୍ତି । ଶ୍ରୀ ମିଶ୍ର NIPA, IATA ର ସଭ୍ୟ ଅଛନ୍ତି । ମୌଳିକ ରଚନା ସହ ଶ୍ରୀ ମିଶ୍ର ବିଶିଷ୍ଟ କଥାକାରଙ୍କ ଗଳ୍ପକୁ ନାଟ୍ୟରୂପ ଦେବାରେ ସିଦ୍ଧହସ୍ତ ।

୧୯୯୯ ଓ ୨୦୦୦ ମସିହା ବିଶ୍ୱନାଟ୍ୟ ଦିବସରେ ଶ୍ରୀ ମିଶ୍ରଙ୍କ ନାଟକ ଅଭିନୀତ। ଧଉଳି ଉତ୍ସବ-୨୦୦୩ରେ ତାଙ୍କ ନାଟକ ଅଭିନୀତ ହୋଇ ପ୍ରଶଂସିତ ହୋଇଛି ଏବଂ ଉକ୍ତ ଉତ୍ସବରେ ଶ୍ରୀ ମିଶ୍ରଙ୍କୁ ସମ୍ବର୍ଦ୍ଧିତ କରାଯାଇଛି । ସର୍ବଭାରତୀୟ ବହୁଭାଷୀ ନାଟକ ଓ ମଞ୍ଚକଳା ପ୍ରତିଯୋଗିତାରେ ସେ ସମ୍ମାନିତ। ରାଜ୍ୟସ୍ତରୀୟ 'ଚଲାପଥ' ନାଟକ ପୁରସ୍କାର (୨୦୦୨) ଓ ନାଟ୍ୟଭୂଷଣ ସମ୍ମାନ (୨୦୦୫) ପ୍ରାପ୍ତ ।

ପ୍ରକାଶିତ ନାଟକ ମଧ୍ୟରେ 'ତିନୋଟି ନାଟକ' (୧୯୯୨), 'ଆହତ ଆଲୋକ' (୧୯୯୭), ନିର୍ବାଚିତ ବେତାର ନାଟକ (୧୯୯୯), 'ମୋକ୍ଷ' (୨୦୦୦), ଅବ୍ୟକ୍ତ ପ୍ରତୀକ୍ଷା (୨୦୦୦), ପରାଜିତ କାଳିଦାସ (୨୦୦୨), ପଞ୍ଚ ନାଟକ (୨୦୦୪) ଓ ଅକ୍ଟୋପସ୍ (୨୦୦୮) ପ୍ରଣିଧାନଯୋଗ୍ୟ । ଲବ୍ଧପ୍ରତିଷ୍ଠ ସାହିତ୍ୟପତ୍ରିକା 'ଝଙ୍କାର', 'ସମାଜ', 'ପ୍ରଜାତନ୍ତ୍ର', 'ଧରିତ୍ରୀ', 'ଆଗାମୀ ଶତାବ୍ଦୀ', 'ସମୟ', 'ଶଙ୍ଖନାଦ', 'ମୂର୍ଚ୍ଛନା', 'ସମାରୋହ', 'ନବରବି', ବିଶ୍ୱମୁକ୍ତି', 'କଥା କଥା ଓ କବିତା କବିତା', 'ଶଙ୍ଖ', 'କାଦମ୍ବିନୀ', 'ସୃଜନୀ' ଓ 'ସମାରୋହ' ଆଦିରେ ଶ୍ରୀ ମିଶ୍ରଙ୍କର ବହୁ ଲେଖା ପ୍ରକାଶିତ ।

'ଝଙ୍କାର' ଓ ଅନ୍ୟାନ୍ୟ ସାହିତ୍ୟ ପତ୍ରିକାରେ ପୂର୍ବରୁ ପ୍ରକାଶିତ ତଥା କେତୋଟି ସଦ୍ୟଲେଖାର ସମାହାରରେ ଶ୍ରୀ ମିଶ୍ରଙ୍କ ଗଳ୍ପ ସଂକଳନ 'ହଜିଯାଉଥିବା ପାଦଚିହ୍ନ' ଏକ ସର୍ବାଦୃତ ଗଳ୍ପ ପୁସ୍ତକ।